# ରତ୍ନଦ୍ୱୀପ

(R. L. Stevensonଙ୍କର Treasure Island ଅବଲମ୍ବନରେ ରଚିତ)

ଶ୍ରୀମତୀ ମନୋରମା ମହାପାତ୍ର

ଲୋକସେବକ ମଣ୍ଡଳ

କଟକ



# ରତ୍ନଦ୍ୱୀପ


ପ୍ରକାଶିକା :

ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

କଟକ : ୭୫୩୦୦୨

ପ୍ରକାଶନ ଉପଦେଷ୍ଟା :

ଡକ୍ଟର କୃଷ୍ଣପ୍ରସାଦ ମିଶ୍ର

ପ୍ରଥମ ସଂସ୍କରଣ ୧୯୭୯

ଦ୍ୱିତୀୟ ସଂସ୍କରଣ ୧୯୯୦

ମୁଦ୍ରାକର :

ପଦ୍ମାଳୟା ପ୍ରକାଶନୀ

ଶଙ୍କରପୁର, କଟକ-୧୨

ମୂଲ୍ୟ : ଟ୧୫-୦୦


**RATNA DWEEPA**

Smt. Manorama Mohapatra


*Publishers* :

Srimati Anna purna Mishra

Cuttack Students Store

Balubazar Cuttack-2

Publication Adviser :

**Dr. K. P. Mishra**

*First Edition* : *1979*

*Second Edition* : *1990*

Price : Rs. 15

ମୋ ଦେଶର ଅଗଣିତ କୁନ କୁନ ପୁଅଝିଅଙ୍କ ହାତରେ

ଶିଶୁ ସମ୍ବତ୍ସର ଉପଲକ୍ଷେ ପ୍ରାଣଭରା ଆଶୀର୍ବାଦ

ସହ (ରତ୍ନଦ୍ୱୀପ) ଅର୍ପଣ କଲ

—ଲେଖିକା—

ତା ୧୪।୧୨।୭୯

କଟକ

# ଦୁଇ ପଦ

ଅନେକ ଦିନ ତଳର କଥା—୧୯୫୯ ସାଲ । ସେତେବେଳେ 'ସମାଜ'ର ଶିଶୁସଭାର ସ୍ତମ୍ଭରେ ପ୍ରକାଶିତ 'ରତ୍ନଦ୍ୱୀପ'ର ପିଲାଙ୍କ ମହଲରେ ଭାରି ସୁନାମ ! ଧାରାବାହିକ ଭାବରେ 'ରତ୍ନଦ୍ୱୀପ' (R. L. Stevensonଙ୍କ Treasure Island ଅବଲମ୍ବନରେ ରଚିତ) ପ୍ରକାଶ ପାଉଥାଏ । ଏଣେ ଗଦା ଗଦା ଚିଠି ଆସି ଜମା ହୁଏ "ରତ୍ନଦ୍ୱୀପ ଭାରି ଭଲ ଲାଗୁଛି ଆମକୁ ।"

"ଭାରି ଭଲ ଲାଗୁଛି—ସିଲଭରର ଗପ ଛୁଟୁ ନା"—ଏଇଭଳି ଅନେକ ପିଲାଙ୍କ ତୁଣ୍ଡରୁ ଶୁଣି ମୁଁ 'ରତ୍ନଦ୍ୱୀପ' Treasure Islandର ଅବଲମ୍ବନରେ ରଚନା କରିଥିଲି । ଏହି ରତ୍ନଦ୍ୱୀପ 'Treasure Island'ର, ଓଡ଼ିଆ ଭାଷାରେ ସର୍ବପ୍ରଥମ ମର୍ମାନୁବାଦ । ଶିଶୁସଭାରେ ପ୍ରକାଶ ହେବା ପରେ ବିଶେଷ ଭାବରେ ଲୋକପ୍ରିୟ ତଥା ଆଦୃତ ହେଲା ଓ କ୍ରମାଗତ ଶିଶୁ ପାଠକ ପାଠିକାଙ୍କ ଠାରୁ ତାଗିଦ ଆସିଲା, "କେବେ ଆମେ 'ରତ୍ନଦ୍ୱୀପ' ବହି ପାଇବୁ ?" ସତକୁ ସତ ଏହାକୁ ପ୍ରକାଶ କରିବାକୁ ବହୁ ପ୍ରକାଶକ ଆଗ୍ରହ ପ୍ରଦର୍ଶନ କଲେ, ମାତ୍ର 'ଛବି' ନ ଥାଇ ବହି ପ୍ରକାଶିତ ହେଲେ ଅଧିକ ମନୋମୁଗ୍ଧକର ତଥା ରୁଚିକର ହେବ ନାହିଁ । ଯୋଜନା ହେଲା ବହୁ ମନୋଜ୍ଞ ଚିତ୍ରରେ ସମୃଦ୍ଧ ହୋଇ ପୁରାପୁରି ଶିଶୁ ମନଲୋଭା 'ରତ୍ନଦ୍ୱୀପ' ଆତ୍ମପ୍ରକାଶ କରିବ । ମନଲାଖି ଛବି ଦେଇ ଛାପିବା ସମ୍ଭବ ହୋଇ ପାରିଲା ନାହିଁ । ଫଳରେ ଦିନ ଗଡ଼ିଲା । ଇତିମଧ୍ୟରେ 'ରତ୍ନଦ୍ୱୀପ' ଅଧିକ ଲୋକପ୍ରିୟ ହେବାରୁ ଏହାର ଅନ୍ୟ ଏକ ଅନୁବାଦ ବହି ଆକାରରେ ପ୍ରକାଶ ପାଇଗଲା । ଆଗ୍ରହ ଓ ଉତ୍ସାହ କ୍ରମଶଃ ଊଣା ହେବାକୁ ଲାଗିଲା । ଯେଉଁମାନେ ଏହି ଗଳ୍ପଟିକୁ ଓଡ଼ିଆ ଭାଷାରେ ଶୁଣିବା ପାଇଁ ଆଗ୍ରହ ପ୍ରକାଶ କରି ମତେ ପ୍ରେରଣା ଦେଇଥିଲେ ସେମାନଙ୍କର ପୁଅ ଝିଅମାନଙ୍କ ହାତରେ ବହୁ ଆକାଂକ୍ଷିତ ଏହି 'ରତ୍ନଦ୍ୱୀପ'କୁ ଦେଇ ମୁଁ ଆଜି ଗଭୀର ସନ୍ତୋଷ ଲାଭ କରୁଛି । ମୋ ଦେଶର ଅଗଣିତ ଟିକି

ପୂଅ ଝିଅ ବହିଟିକୁ ଆଦରରେ ଗ୍ରହଣ କଲେ ମୋର ବହୁକାଳର ସାଇତା ସ୍ୱପ୍ନ ସାର୍ଥକ ହେବ । କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର ଏହାର ପ୍ରକାଶନର ଦାୟିତ୍ୱ ବହନ କରିଥିବାରୁ ମୋର ପିତୃପ୍ରତିମ ଶ୍ରୀ ଅନନ୍ତ ମିଶ୍ରଙ୍କୁ ମୁଁ ଗଭୀର କୃତଜ୍ଞତା ଜ୍ଞାପନ କରୁଛି । ଚିରନ୍ତନ ସାହିତ୍ୟ କାଳଜୟୀ । R. L. Stevensonଙ୍କ ରଚିତ Treasure Island ସବୁଯୁଗର ଶିଶୁମାନଙ୍କୁ ଅଖଣ୍ଡ ଆନନ୍ଦ ଦେବାରେ ଯଥାର୍ଥ ସମର୍ଥ ଏ ସତ୍ୟ କେହି ଅସ୍ୱୀକାର କରି ପାରିବେ ନାହିଁ ।

ଆମ ଦେଶର ପିଲାଙ୍କ ରୁଚିଅନୁକୂଳ କରିବା ନିମନ୍ତେ ମୋର ଆନ୍ତରିକ ପ୍ରୟାସ ସଫଳ ହେଲେ ମୋର ଦୀର୍ଘ ପ୍ରତୀକ୍ଷା ସାର୍ଥକ ହେବ ।

ତା ୧୫ । ୧୨ । ୭୨ — ମନୋରମା ମହାପାତ୍ର

କଟକ

# ଭୂମିକା

ରବର୍ଟ ଲୁଇସ୍ ଷ୍ଟିଫେନ୍‌ସନ୍‌ (Robert Louis Stevenson) ଭାରତ ବର୍ଷର ଅଗଣିତ ଗ୍ରନ୍ଥଗ୍ରାହୀଙ୍କ ନିକଟରେ ତାଙ୍କର ରୋମାଞ୍ଚକାରୀ ପୁସ୍ତକ Treasure Island (ରତ୍ନଦ୍ୱୀପ)ର ଲେଖକ ଭାବରେ ବିଶେଷ ସୁପରିଚିତ । ଇଂରାଜ ସାହିତ୍ୟରେ ପ୍ରକାଶିତ ବହୁ ରୋମାଞ୍ଚକାରୀ ପୁସ୍ତକ ମଧ୍ୟରେ Treasure Island ପୁସ୍ତକଟି ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତଙ୍କ ଦ୍ୱାରା ଆଦୃତ ତଥା ବିଶେଷ ପ୍ରଶଂସିତ ହେବା ସଙ୍ଗେ ହୋଇ ପୃଥିବୀର ସବୁ ଭାଷାରେ ଅନୁବାଦିତ ହୋଇ ଯଥେଷ୍ଟ ଲୋକପ୍ରିୟ ହୋଇ-ପାରିଥିଲା । ପୁସ୍ତକଟି ରଚନା ହେବାର ବହୁକାଳ ଅତୀତ ହୋଇ ଥିଲେ ମଧ୍ୟ ରତ୍ନଦ୍ୱୀପର କାହାଣୀ ସବୁଶ୍ରେଣୀର ପାଠକଙ୍କୁ ଆନନ୍ଦ ଦେଇପାରୁଛି । ଏହି ରୋମାଞ୍ଚକର କାହାଣୀ ସେ ୧୮୮୧ ମସିହାରେ ତାଙ୍କର ପାଳିତ ପୁଅ Lioyd Osbourneଙ୍କୁ ଆମୋଦ ଦେବାପାଇଁ ରଚନା କରିଥିଲେ । Lioydଙ୍କୁ ଗପ କହିବା ଛଳରେ ଷ୍ଟିଭେନ୍‌ସନ୍ Young Folksରେ ଧାରାବାହିକ ଭାବରେ The Sea Cook (ସମୁଦ୍ରର ପାଚକ) ନାମ ଦେଇ ରତ୍ନଦ୍ୱୀପ କାହାଣୀ ଅକ୍ଟୋବର ୧୮୮୧ରେ ପ୍ରକାଶ କଲେ (ସେ ସ୍କଟ୍‌ଲ୍ୟାଣ୍ଡରେ ଥିଲାବେଳେ ସମୁଦ୍ର ଯାତ୍ରାରୁ ଫେରି ଅସୁସ୍ଥ ହୋଇ ପଡ଼ିଥିଲେ ଏବଂ ଅସୁସ୍ଥ ଅବସ୍ଥାରେ ଏହି ପୃଥିବୀ ପ୍ରସିଦ୍ଧ କାହାଣୀ ରଚନା କରିଥିଲେ) । ଏହି ପୁସ୍ତକଟି ପ୍ରକାଶିତ ହେବା ସଙ୍ଗେ ସଙ୍ଗେ ତାଙ୍କର ଖ୍ୟାତି ଏଭଳି ଭାବରେ ବଢ଼ିଗଲା ଯେ ସେ Black Arrow, A Child's Garden of Verses, Kidnapped ପ୍ରଭୃତି ବହୁ ରୋମାଞ୍ଚକାରୀ ପୁସ୍ତକ ରଚନା କଲେ । Prince Otto ନାମକ ଆଉ ଗୋଟିଏ ପୁସ୍ତକ ୧୮୮୫ରେ ରଚନାକଲେ । ସେତେବେଳକୁ ସେ ଅତି-ମାତ୍ରାରେ ଅସୁସ୍ଥ ହୋଇପଡ଼ି ଥାଆନ୍ତି; ମାତ୍ର ସବୁ ପ୍ରକାର ଦୁଃଖ ଝଞ୍ଜା ସଙ୍ଗେ ଲଢ଼େଇ କରିବା ତାଙ୍କର ବିଚିତ୍ର ଜୀବନର ବିଶେଷତ୍ୱ ଥିଲା । ଏଥିରୁ ସେ ଆନନ୍ଦ ଓ ପ୍ରେରଣା ପାଉଥିଲେ । ତାଙ୍କ ଜୀବନୀ ପାଠକଲେ ଜଣାଯାଏ ସେ ସବୁବେଳେ ରୋମାଞ୍ଚକର ଘଟଣା ଭଲ ପାଉଥିଲେ ଏବଂ

ଅତି ଅଳ୍ପ ବୟସରୁ ସମୁଦ୍ର ସଙ୍ଗେ ବନ୍ଧୁତ୍ୱ କରି ଦେଇଥିଲେ । ତାଙ୍କ ଜୀବନର ଅଧିକାଂଶ ସମୟ ଭ୍ରମଣ ଓ ସମୁଦ୍ର ଯାତ୍ରାରେ କଟିଯାଇଥିଲା । ସେ ସମୁଦ୍ର ଯାତ୍ରାକରି ବହୁ ସୁଦୂର ରାଜ୍ୟକୁ ଯାଉଥିଲେ । ତାଙ୍କ ଚିଠି ପରିଚିତଙ୍କୁ ଏତେ ସୁନ୍ଦର ଭାବରେ ବର୍ଣ୍ଣନାକରି ଲେଖୁଥିଲେ ଯେ ସେମାନେ ଏହି ଘଟଣାସବୁ ପଢ଼ି ଅଭିଭୂତ ହୋଇ ଯାଉଥିଲେ । ସେହିଭଳି ଗୋଟିଏ ସମୁଦ୍ର ଯାତ୍ରାରୁ ଫେରି ସେ ଜମ୍‌ର କାହାଣୀ ଲେଖିବାରେ ମନଦେଲେ । ସେ ଯେତେବେଳେ ତାଙ୍କ ସାବତପୁଅ ଆଗରେ ଜମ୍‌ର ଗପ କହୁଥାଆନ୍ତି—ସେତେବେଳେ ପାଖ ପଡ଼ୋଶୀ ସମସ୍ତେ ସେ କାହାଣୀ ଶୁଣିବାରେ ମଜ୍ଜି ଯାଆନ୍ତି । ସମସ୍ତଙ୍କର ଆଗ୍ରହ ତାଙ୍କୁ ଉତ୍ସାହିତ କରିଥିଲା । ଅବଶ୍ୟ ୧୮୭୮ ମସିହାରେ ସେ An Inland Voyage ଏବଂ Travell with a Donkey in the Sevennes 1879 ନାମକ ଦୁଇଟି ଭ୍ରମଣ କାହାଣୀ ରଚନା କରିଥିଲେ । ଏହା ବ୍ୟତୀତ ବହୁ ପ୍ରବନ୍ଧ ଉପନ୍ୟାସ ମଧ୍ୟ ରଚନା କରିଥିଲେ । କିନ୍ତୁ Treasure Island ତାଙ୍କୁ ସବୁଠାରୁ ଅଧିକ ଖ୍ୟାତି ଆଣିଦେଇଥିଲା । ସମୁଦ୍ର ବିଷୟରେ ତାଙ୍କର ବହୁ ପୁସ୍ତକ ରହିଛି । ତାଙ୍କର ରୋମାଞ୍ଚକାରୀ ଚିଠିଗୁଡ଼ିକ ମଧ୍ୟ ପୁସ୍ତକ ଆକାରରେ ପରବର୍ତ୍ତୀ କାଳରେ ପ୍ରକାଶିତ ହୋଇଛି । ଏକ ନିଶ୍ୱାସରେ ପଢ଼ିଗଲା ଭଳି ଅତି ମନୋମୁଗ୍‌ଧକର ରଚନା ଶକ୍ତି ଷ୍ଟିଭେନ୍‌ସନ୍‌ଙ୍କ ବିଶେଷତ୍ୱ । ଅସୁସ୍ଥ ଶରୀରରେ ତାଙ୍କର ଅଧିକାଂଶ ପିଲାଙ୍କ ମନଲାଖି ଲେଖା ପ୍ରକାଶିତ ହୋଇଛି । ସେ ୧୮୫୦ ମସିହାରେ ଜନ୍ମହୋଇ ମାତ୍ର ୪୭ ବର୍ଷ ଏ ସଂସାରରେ ରହିଥିଲେ । ଅତି ଅଳ୍ପଦିନ ମଧ୍ୟରେ ରୋମାଞ୍ଚକାରୀ ଲେଖକ ଭାବରେ ସେ ପୃଥିବୀ ବିଖ୍ୟାତ ହୋଇଥିଲେ । ଶିଶୁ ସାହିତ୍ୟ କ୍ଷେତ୍ରରେ ସେ ଜଣେ ସର୍ବଶ୍ରେଷ୍ଠ ଲେଖକ ଭାବରେ ସାରା ପୃଥିବୀରେ ପରିଚିତ ।



# ହୋଟେଲରେ ଅପରିଚିତ କପ୍ତାନ

୧

ବହୁଦିନ ତଳର କଥା । ସେତେବେଳେ ମୁଁ ଛୋଟପିଲା । ମୋ ବାପାଙ୍କର ଗୋଟିଏ ହୋଟେଲ ଥିଲା । ନାମ ଦିଆଯାଇଥିଲା, "ଆଡ଼ମିରାଲ ବେନ୍‌ବୋ" ।

ଦିନେ ଜଣେ ନାବିକ ଆମ୍ଭ ହୋଟେଲର ଦ୍ୱାରଦେଶରେ ଆସି ପହଞ୍ଚିଲା । ପଛେ ପଛେ ମୂଲିଆଟିଏ ଠେଲାଗାଡ଼ିରେ ଗୋଟାଏ ପ୍ରକାଣ୍ଡ ଲୁହା ସିନ୍ଦୁକ ଧରି ଆସିଥିଲା । ଏହା ଭିତରେ ଅନେକ ଦିନ କଟିଗଲାଣି । ତଥାପି କାଲିପରି ସେ ନାବିକର କଥା ଗୋଟି ଗୋଟି ମୋ ମନେ ପଡ଼ିଯାଉଛି । କି ଭୀଷଣ ଢେଙ୍ଗା ସେ ଲୋକଟା, ବଳିଷ୍ଠ ଶରୀର, ହାତର ମାଂସପେଶୀ ଖୁବ ଟାଣ । ଆଙ୍ଗୁଠିଗୁଡ଼ିକ ଅଗରେ ଅପରିଷ୍କୃତ କଳା ଭଙ୍ଗା ନଖ । ରକ୍ତଶୂନ୍ୟ ସାଦା ବରଫ ପରି ଶେତା ଶେତା ଗାଲ, ଭାରି ବୀଭତ୍ସ ଦେଖାଯାଉଥାଏ । ଧୂଳିଭରା ଅତ୍ୟନ୍ତ ଅପରିଷ୍କୃତ ଗୋଟାଏ ମୋଟା କୋଟ ତାର ସମଗ୍ର ଶରୀରକୁ ଘୋଡ଼ାଇ ରଖିଥିଲା । ପିଠି ଉପରକୁ ବେଣୀପକା ଲମ୍ବା ଚୁଟି ଧୂଷୂରିର ଲଙ୍ଗୁଡ଼ପରି ଦୋହଲୁଥାଏ । ଡାହାଣ ପାଖରେ ତରବାରିର କଟା ଚିହ୍ନ । ଇସ୍ କି ଭୟଙ୍କର ରୂପ । ମନେ-ପଡ଼ିଲେ ଏବେ ମଧ୍ୟ ଭୟରେ ମୋ ଦେହ ଥରି ଉଠୁଛି ।

ଧୀରେ ଧୀରେ ପାଦ ପକାଇ ଏଣେ ତେଣେ ଚାହିଁ ସେ ଆସୁଥାଏ । ଆମ୍ଭର ସାଇନବୋର୍ଡରେ ନଜର ପକାଇ ସେ ଆମର ହୋଟେଲ ଆଡ଼କୁ ଅଗ୍ରସର ହେଲା । ମୋର ମନେଅଛି, ସେତେବେଳେ ଗୁଣୁଗୁଣୁ କରି ଭଙ୍ଗା

ଗଳାରେ ସେ ଗୋଟିଏ ପୁରୁଣା ନାଉରୀ ସଙ୍ଗୀତ ଗାଉଥାଏ, ଅତି ବିକଟ ସ୍ୱରରେ ସେ ଗାଉଥାଏ—ଏଇ ପିଦ୍ କୁଣ୍ଟି

ମୃତ ମାନବର
ଇୟୋ ହୋ ହୋ
ଦୃଷ୍ଟି ତା ଉପରେ
ପଞ୍ଚ ଦଣ୍ଡର
ଇୟୋ ହୋ ହୋ
ତାଳ ଆଉ ତାଳ
ସୁରା ବୋତଲର
ଇୟୋ ହୋ ହୋ ।

ନାବିକଟି ହାତରେ ଗୋଟିଏ ଲମ୍ବା ବାଡ଼ି ଧରିଥିଲା । ବାଡ଼ିରେ ଦରଜାରେ ଆଘାତକରିବା ସଙ୍ଗେ ସଙ୍ଗେ ବାପା ବାହାରକୁ ଆସିଲେ । ବାପାଙ୍କୁ ଦେଖି ସେ କହିଲା—'ତଣ୍ଟି ଶୁଖିଯାଉଛି । ଶୀଘ୍ର ଏକ ଗ୍ଲାସ ମଦ ଆଣ !' ମଦ ଆସିବା ସଙ୍ଗେ ସଙ୍ଗେ ସେ ଏକ ନିଶ୍ୱାସରେ ସବୁତକ ଶେଷ କରିଦେଲା । ସାଇନବୋର୍ଡ଼ ଉପରେ ବାରମ୍ବାର ଆଖିପକାଇ କହିଲା, 'ବାଃ ବେଶ୍ ଜାଗା ତ, ଏଠାରେ ବେଶି ଗହଳ ନାହିଁ ତ ?'

ବାପା ତାକୁ ଆଶ୍ୱାସନା ଦେବାରୁ ସେ ସଙ୍ଗେ ସଙ୍ଗେ କହିଲା, ବେଶ୍, ମୁଁ ଏଠାରେ କିଛିଦିନ ରହିବି । ତା ପରେ ସେ ମୂଲିଆକୁ ପିଦ୍ କୁ-ଣ୍ଟିକୁ ଭିତରେ ରଖିବା ନିମନ୍ତେ ରୁକ୍ଷସ୍ୱରରେ ଆଦେଶ ଦେଲା । ପିଦ୍ କୁଣ୍ଟି ଯଥା ସ୍ଥାନରେ ରହିବାପରେ ସେ କହିଲା, "ମୁଁ ଜାହାଜର କାପ୍ତାନ, ଆପଣଙ୍କର ଏହି ବେନବୋରେ କିଛିଦିନ ବିଶ୍ରାମ ନେବି ।" ତାର କଣ୍ଠସ୍ୱର ଘୋର କର୍କଶ ଓ ଭୟାବହ ଶୁଣାଯାଉଥିଲା । ସେଥିରେ ଭଦ୍ରତାର ଚିହ୍ନ ଲେଶମାତ୍ର ନ ଥିଲା । ତତ୍ପରେ ସେ ବାପାଙ୍କଆଡ଼କୁ ଚାହିଁ କହିଲା, 'ମୋର ଖାଇବା ପିଇବା ଅତି ସାଧାରଣ । ମଦ, ମାଂସ ଓ ଅଣ୍ଡା ହେଲେ ମୋର ଚଳିଯିବ ।'

ସେହି ମୂଲଆଠାରୁ ମୁଁ ନରୱେଲାରେ କାପ୍ତାନ ସମ୍ବନ୍ଧରେ କିଛି ଖବର ସଂଗ୍ରହ କରିନେଲି । ସେ କୁଆଡ଼େ ସକାଳର ଡାକ ଜାହାଜରୁ ଓହ୍ଲାଇ ହୋଟେଲର ସନ୍ଧାନ ନେଲା । 'ଆଡ଼ମିରାଲ ବେନବୋ' ସମୁଦ୍ରର ନିକଟବର୍ତ୍ତୀ ଓ ନିର୍ଜନ ସ୍ଥାନ ବୋଲି ସମ୍ବାଦ ପାଇବା ସଙ୍ଗେ ସଙ୍ଗେ ସିଧା ସଳଖ ଏଠାକୁ ଆସିଯାଇଛି ।

କାପ୍ତାନର ଗୋଟିଏ ଦୂରବୀକ୍ଷଣ ଯନ୍ତ୍ର ଥିଲା, ତାହା ପିତଳରେ ତିଆରି । ଦିନବେଳେ ସେ ଦୂରବୀକ୍ଷଣ ଯନ୍ତ୍ର ଧରି ବାହାରକୁ ବୁଲିବାକୁ ଯାଏ । ପାହାଡ଼ ବା ଘରର ଆଖପାଖରେ ଘୂରି ବୁଲେ; କିନ୍ତୁ ରାତିହେଲେ ଘରଭିତରୁ ବାହାରେ ନାହିଁ । ଅଗ୍ନିକୁଣ୍ଡ ପାଖରେ ଗୋଟିଏ କୋଣରେ ଚୁପ୍ ହୋଇ ବସିରହେ । ସେତେବେଳେ କେହି କିଛି ପ୍ରଶ୍ନକଲେ ପ୍ରାୟ ନୀରବ ରହେ । ବାରମ୍ବାର କୌଣସି କଥା ପଚାରିଲେ ବିକୃତ ମୁଖଭଙ୍ଗୀ କରି ବଡ଼ ବଡ଼ ଆଖିରେ ଖାଲି ଚାହେଁ ଓ ନାକ ଫୁଲାଇ ଗଁ ଗଁ ହୁଏ । ସେ ଯେ ଅତି ବେଶି ବିରକ୍ତ ହୋଇଛି, ତାହା ଜଣାଇ ଦିଏ ।

## ଲୋକଟାର ସନ୍ଧାନ

ଦିନେ କାପ୍ତାନ୍ ମୋତେ ନିରୋଳାକୁ ଡାକିନେଲା । ମୋ ହାତକୁ ଗୋଟାଏ ଟଙ୍କା ବଢ଼ାଇଦେଲା । କହିଲା, 'ଶୁଣ ' ତୁମ୍ଭକୁ ଗୋଟାଏ କାମ କରିବାକୁ ହେବ । ଯଦି ରାସ୍ତାରେ କୌଣସି ଏକଗୋଡ଼ିଆ ଲୋକଟା ଲୋକକୁ ଭେଟିବ, ତେବେ ସଙ୍ଗେ ସଙ୍ଗେ ଆସି ମୋତେ ଖବର ଦେବ । ଦେଖୁଛ ତ, କାର୍ଯ୍ୟଟି କିଛି କଷ୍ଟ ନୁହେଁ, ତଥାପି ଏହି କାର୍ଯ୍ୟ ନିମନ୍ତେ ମୁଁ ପ୍ରତି ମାସରେ ତୁମକୁ ଟଙ୍କାଏ ଲେଖାଏଁ ପାରିଶ୍ରମିକ ଦେବି, କିନ୍ତୁ ସାବଧାନ ! ଏ ସବୁ କଥା ବାହାରେ କଦାପି କାହାକୁ କହିବ ନାହିଁ ।'

ନଗଦ ଟଙ୍କାଟିଏ ମିଳିଗଲା । ପୁଣି ପ୍ରତି ମାସରେ ଏହିପରି ମିଳିବ । ସେହି ଆଶାରେ ମୁଁ ଲୋକଟାର ସନ୍ଧାନରେ ରହିଲି । ଘରେ କାମ କରୁଥାଏ; ତା କଥା ମନେ ପଡ଼ିଯାଏ । ବାହାରେ ବୁଲୁଥାଏ କି ଖେଳୁଥାଏ, ମନ ଭିତରେ ସେହି କଥା ଉଠେ । କୌଣସି ପ୍ରକାରେ

ଲୋକଟାକୁ ମୁଁ ଭୁଲିପାରିଲି ନାହିଁ । ମନ ମଧ୍ୟରେ ତାର ରୂପ କଳ୍ପନା କରିପାରିଥାଏ । ତାର କଥା ଏତେ ବେଶି ଭାବେ ଯେ, ରାତିରେ ପ୍ରାୟ ତାକୁ ସ୍ୱପ୍ନ ଦେଖେ । ଇସ୍ ! କି ବିକଟ ସେ ମୂର୍ତ୍ତି । ଅଧିକାଂଶଦିନ ରାତି ଅଧରେ ତାକୁ ସ୍ୱପ୍ନରେ ଦେଖି ଭୟରେ ଚିତ୍କାର କରି ମୁଁ କାନ୍ଦି ଉଠେ । ତଥାପି ତାକୁ ଭୁଲିପାରେ ନାହିଁ ।

କାପ୍ତାନ୍ ବେନବୋର କୌଣସି ଲୋକଙ୍କୁ ଖାତିର କରୁନଥିଲା ।

ଫଳରେ ତାକୁ ସମସ୍ତେ ଯମଦୂତ ପରି ଭୟ କରୁଥିଲେ । ରାତିରେ ଆମମାନଙ୍କର ନିଶ୍ଚିନ୍ତରେ ଶୋଇବାର ଉପାୟ ନ ଥାଏ । କାରଣ ସେ ଖୁବ୍ ମଦ ଖାଏ ଓ ବଡ଼ ପାଟିରେ ଗୀତ ଗାଏ । ସେହି ପୁରୁଣା ନାବିକ ଗୀତଟି—

ଏଇ ସିନ୍ଦୁକଟି ମୃତ ମାନବର
ଇୟୋ, ହୋ ହୋ
ଦୃଷ୍ଟି ତା ଉପରେ ପଞ୍ଚଦଶର
ଇୟୋ, ହୋ ହୋ
ଢାଳ ଆଉ ଢାଳ ସୁରା ବୋତଲର
ଇୟୋ, ହୋ ହୋ

ସେ କି ବିକଟ ଚିତ୍କାର ! ଯେତେ ଅବା ଘର ଫାଟିପଡ଼େ । ସମସ୍ତଙ୍କୁ ତା ସଙ୍ଗୀତ ଗୀତରେ ଯୋଗଦେବାକୁ ପଡ଼େ । ତା ନ ହେଲେ ରକ୍ଷାନାହିଁ । ଗୀତ ଚାଲିଛି ତ ଚାଲିଛି; ହଠାତ୍ ସେ ଖୁବ୍ ଜୋରରେ ଟେବୁଲ ବାଡ଼େଇ ଚିତ୍କାର କରେ 'ବନ୍ଦ କର, ବନ୍ଦ କର ?'

ସମସ୍ତେ ଚୁପହେଲେ ସେ ଗଳ୍ପ କହିବାକୁ ଆରମ୍ଭକରେ । ଯେତେ-ସବୁ ଡର ଭୟର କାହାଣୀ, ଫାଶି କଥା, ଝଡ଼ର କଥା, ଡକାୟତ କଥା ଜାହାଜ ବୁଡ଼ିବା କଥା । ଏଇମିତି କେତେ ରାଇଜର କେତେ କଥା ଯେ ସେ କହେ, ତାର କଳନା ନାହିଁ । ଏମିତି ସ୍ୱର ଓ ଭଙ୍ଗୀରେ ସେ ଗଳ୍ପ

କହେ ଯେ, ଆମେ ସମସ୍ତେ ଭୟରେ ଥର ଉଠୁ । ବିଛଣାରେ ଯାଇ ଶୋଇବା ପାଇଁ ସାହସ ହୁଏନାହିଁ । ଏତେ ଭୟ ଲାଗେ ତଥାପି ଗଳ୍ପ ଶୁଣା ସଉକ ଛାଡ଼େନାହିଁ । ଭୟଭିତରେ ମଧ୍ୟ କେମିତି କେଜାଣି ଶୁଣିବାକୁ ଭଲ ଲାଗେ । ସତେ ଯେପରି କୌଣସି ଅଜ୍ଞାତ ମୋହ ଆମକୁ ଘାରି-ରହିଛି ।

କାପ୍ତାନ୍‌ର ମିଜାସ୍ ବୁଝିବା ଭାରି କଷ୍ଟକର ବ୍ୟାପାର । ଗଳ୍ପ ମଝିରେ କିଏ ଯେବେ କିଛି ପ୍ରଶ୍ନକଲା, ତେବେ ସେ ରାଗରେ ଗର୍ଜି ଉଠେ, ଭାବେ ଗଳ୍ପ ଶୁଣିବାର ଆଗ୍ରହ ନାହିଁ, କଥା ମଝିରେ ବାଧା ଦେବାପାଇଁ ଚେଷ୍ଟା କରୁଛି । ପୁଣି ଯଦି ଚୁପକରି ବସି ଗଳ୍ପ ଶୁଣିବ, ତେବେ ମଧ୍ୟ ନିସ୍ତାର ମିଳିବନାହିଁ । ସେ ରାଗରେ ଜଳି ଉଠିବ । କହିବ—'ଏ କି କଥା, ଗଳ୍ପ ଶୁଣୁଛ, ଅଥଚ କିଛି ପ୍ରଶ୍ନ ପଚାରୁନାହିଁ ? ଏହା କ'ଣ ସମ୍ଭବ ? ନିଶ୍ଚୟ ଅନ୍ୟମନସ୍କ ଅଛ ।'

ଏଇମିତି କେତେ ଦିନ କଟିଗଲା । କାପ୍ତାନ୍ ବେନବୋ ଛାଡ଼ି ଯିବାର ନାମଗନ୍ଧ ଧରେନାହିଁ । ଖଣ୍ଟମଡ ଗାଡ଼ ମାଡ଼ି ବସିଛି । ଏଣେ ତାର ଅନେକ ଟଙ୍କା ପାଉଣା ହୋଇଗଲାଣି; ମାତ୍ର ଗୋଟିଏ ପଇସା ତାଠାରୁ ଆଦାୟ କରିବା ଅସମ୍ଭବ । ବାପା ବଡ଼ ବିପଦରେ ପଡ଼ିଲେ । ବାପା ଟଙ୍କା ମାଗିଲେ ତ କାପ୍ତାନ ରାଗରେ ଆଖି ଲାଲକରି ଗୁହେଁ ଓ ସାପପରି ଫଁ ଫଁ ହୁଏ । ତାର ଭୟଙ୍କର ରୂପ ଦେଖି ବାପା ଡରି ଘର ଭିତରକୁ ପଳାଇଆସନ୍ତି, କିଛି କହିପାରନ୍ତି ନାହିଁ ।

କାପ୍ତାନ୍ କେବେହେଲେ ପୋଷାକ ପରିବର୍ତ୍ତନ କରେନାହିଁ । ସବୁବେଳେ ସେହି ମଇଳା ପୋଷାକଟି ପିନ୍ଧିଥାଏ । ଥରେ ଯାହା ଗୋଟିଏ ଫେରିବାଲାଠାରୁ କେତେ ହଳ ମୋଜା କିଣିଥିଲା, ସେତିକି । ତାର ସେଇ କୋଟ କଥା ମୋର ସବୁବେଳେ ମନେପଡ଼େ । ଘରେ ବସି ନିଜ ହାତରେ ସେହି କୋଟରେ ବାରମ୍ବାର ତାଳି ପକାଉଥାଏ । ସମୁଦାୟ କୋଟଟି ତାଳିରେ ଭରା ।

## ଡାକ୍ତର ଲିଭେସି

କାପ୍ତାନ୍ କେବେ କୌଣସି ଚିଠିପତ୍ର ଲେଖେନାହିଁ । ତାର ନାଁରେ ମଧ୍ୟ କେବେହେଲେ ଚିଠିପତ୍ର ଆସେନାହିଁ । ତାର ଲୁହା ସିନ୍ଦୁକଟି ଦିନ ରାତି ବନ୍ଦଥାଏ । ଖୋଲା ହେବା କେବେହେଲେ କେହି ଦେଖିନାହିଁ ।

କାପ୍ତାନ୍ ସମସ୍ତଙ୍କୁ ମନଇଚ୍ଛା ଗାଳିଦିଏ । କେହି ବାଦ ପଡ଼ନ୍ତିନାହିଁ । ଓଲଟି କଏ ତାକୁ ଗାଳିଦେବ ସେ ସାହସ କାହାରି ହେଲେ ନ ଥିଲା; କିନ୍ତୁ ଥରେ ସେ ଭୀଷଣ ଗାଳି ଖାଇଥିଲା । ସେତେବେଳେ ବାପା ରୋଗ-ଶଯ୍ୟାରେ ପଡ଼ିଥାନ୍ତି । ଡାକ୍ତର ଲିଭେସି ତାଙ୍କୁ ଦେଖିବାକୁ ଆସୁଥାନ୍ତି । ସେହି ସନ୍ଧ୍ୟାରେ ତାଙ୍କର ଆମ ହୋଟେଲରେ ଖାଇବାର କଥା ଥାଏ । କାପ୍ତାନ୍ ଦାଣ୍ଡଘରେ ମଦ ଖାଇ ବେହୋସ ହୋଇ ବସିଥାଏ । ଡାକ୍ତର ଉପର ମହଲାରେ ବାପାଙ୍କୁ ଦେଖି, ଖାଇବା ପିଇବା ସାରି ତଳକୁ ଆସିଲେ । ତାଙ୍କର ଘୋଡ଼ା ସଇଁସ ଖାନାରୁ ଆସି ନ ଥାଏ; ତେଣୁ ସେ ଘୋଡ଼ାକୁ ଅପେକ୍ଷା କରି ଦାଣ୍ଡଘରେ ବସି ରହିଲେ । ରାତି ବହୁତ ହେଲାଣି । ତଥାପି କେହି ଶୋଇବାକୁ ଯାଇ ନ ଥାନ୍ତି । ହଠାତ୍ କାପ୍ତାନ କର୍କଶ ସ୍ୱରରେ ଚିତ୍କାର କରି ଗୀତ ଆରମ୍ଭ କରିଦେଲା-

> ଏଇ ସିନ୍ଦୁକଟି
> ମୃତ ମାନବର
> ଇୟୋ ହୋ ହୋ···

ଡାକ୍ତର ଲିଭେସି ଗୀତ ଶୁଣିବାକୁ ଭଲପାଆନ୍ତି ନାହିଁ । ସେ ରାଗି ଯାଇ କଟମଟ କରି କାପ୍ତାନକୁ ଚାହିଁଲେ ଓ ଗୋଟିଏ ରୋଗୀକୁ ପରାମର୍ଶ ଦେବାକୁ ଲାଗିଲେ । ଏହା ଦେଖି କାପ୍ତାନ ଟେବୁଲ ବାଡ଼େଇ ଦି' ଗୁଣ ତାନରେ ଗୀତ ଆରମ୍ଭକଲା । ଟେବୁଲ ବାଡ଼େଇବାର ଅର୍ଥ ଲିଭେସି ଜାଣନ୍ତି ନାହିଁ; କିନ୍ତୁ ଆମେ ସମସ୍ତେ ଭଲଭାବରେ ଜାଣୁ, ସମସ୍ତଙ୍କୁ କଥା ବନ୍ଦ କରିବାକୁ ପଡ଼ିବ । ଲିଭେସି ସେହିପରି ପରାମର୍ଶ ଦେଉଥାନ୍ତି । କାପ୍ତାନ ପୁଣି ଟେବୁଲ ବାଡ଼େଇଲା; କିନ୍ତୁ ଲିଭେସିଙ୍କର ସେଥିପ୍ରତି ଭ୍ରୂକ୍ଷେପ ନାହିଁ । ସେ ପୂର୍ବପରି ଗପିବାକୁ ଲାଗିଲେ । କାପ୍ତାନ ଲାଲ୍ ଲାଲ୍ ଆଖିରେ

ଗୃହିଁଲା । ଲଭେସିଙ୍କର ସେଥିପ୍ରତି-ଡଲେ ହେଲେ ଖାତର ନାହିଁ । କାପ୍ତାନ ଗାଳିଦେଲା; ଗର୍ଜନ କଲା, 'ଚୁପ୍ ଚୁପ, ଚୁପ୍ କର !'

ଏତେବେଳେ ଲଭେସି ପଗ୍ଚାରିଲେ 'ମତେ କହୁଛ ? କାପ୍ତାନ ରାଗିଯାଇ କହିଲା, 'ହଁ ହିଁ ଆପଣଙ୍କୁ କହୁଛି, କଣ ବୁଝିପାରୁନାହାନ୍ତି ?

ଲଭେସି ସଙ୍ଗେ ସଙ୍ଗେ ଗମ୍ଭୀରଭାବରେ ଜବାବ ଦେଲେ, 'ତୁମର ଗୀତ ବନ୍ଦକର ! ଗୋଟିଏ ଦରକାରୀ କଥା ଶୁଣ ! ମଦ ଛାଡ଼, ନଚେତ୍ ମାତାଲ ହୋଇ ମରିଯିବ' । କାପ୍ତାନ୍ ଟେବୁଲ ସମ୍ମୁଖରେ ଥିବା ଚୌକି ଉପରେ ବସିଥିଲା । ଡାକ୍ତରଙ୍କର କଥା ଶୁଣି ରାଗରେ ନିଆଁ ବାଣ ହୋଇ ଝପଟି ଆସିଲା । ପକେଟରୁ ଗୋଟିଏ ଦାଉଆ ଛୁରୀ ଚଟ୍‌କରି କାଢି ହାତ ପାପୁଲିରେ ନଚାଇ ନଚାଇ ଡାକ୍ତରଙ୍କ ଛାତି ପାଖକୁ ଲକ୍ଷ୍ୟ କରିବାକୁ ଲାଗିଲା; ମାତ୍ର ଲଭେସି ଟଳିଲେ ନାହିଁ । ସେହିପରି ଗମ୍ଭୀର ସ୍ୱରରେ କହିଲେ, 'ପାପିଷ୍ଠ, ଏହି ମୁହୂର୍ତ୍ତରେ ଛୁରୀ ବନ୍ଦକର । ପକେଟରେ ରଖ । ନଚେତ୍ ନିଶ୍ଚୟ କରି କହୁଛି, ତତେ ଫାଶି ଖୁଣ୍ଟରେ ଝୁଲିବାକୁ ପଡ଼ିବ ।'

କାପ୍ତାନ୍‌ର ରାଗ ଆଉ ଦେଖେ କିଏ । ସତେ ଅବା ଡାକ୍ତରଙ୍କୁ ଚିକି ଚିକି କରି ଚୋବାଇ ଖାଇଦେବ; କିନ୍ତୁ ଲଭେସି ମଧ୍ୟ କମ ନୁହନ୍ତି । ଆଖି ଲାଲ କରି ଏମିତି ଧମକଟାଏ ଦେଲେ ଯେ, କାପ୍ତାନ୍‌ଙ୍କ ଏତେ ତେଜ ସବୁ ମଉଳିଗଲା । ସେ ଚୁପ୍ ହୋଇ ବସିପଡ଼ିଲା । ଛୁରୀ ବନ୍ଦକରି ପକେଟରେ ରଖିଦେଲା ।

ତା ପରେ ଲଭେସି କହିଲେ, 'ଡାକ୍ତର ଲଭେସି ଖାଲି ଡାକ୍ତର ନୁହନ୍ତି, ମନେ ରଖିଥାଅ ! ସେ ମାଜିଷ୍ଟ୍ରେଟ୍ । ଏ ସ୍ଥାନ ମୋର ଅଧୀନରେ ଅଛି ! ଯଦି ଆଜିଠାରୁ ତୁମ ବିରୁଦ୍ଧରେ ଆଉ କିଛି ଅଭିଯୋଗ ଶୁଣେ, ତେବେ ତୁମେ ଗୁରୁତର ଦଣ୍ଡ ପାଇବ । ଅତଏବ ସାବଧାନ ।' ଠିକ୍ ଏହି ସମୟରେ ଘୋଡ଼ା ଆସି ପହଞ୍ଚିବାରୁ ଡାକ୍ତର ଚାଲିଗଲେ ।

କାପ୍ତାନ୍ ସେ ରାତିରେ ଆଉ ଗୋଳମାଳ କଲାନାହିଁ, ଏବଂ କିଛି ଦିନ ପର୍ଯ୍ୟନ୍ତ ଶାନ୍ତଶିଷ୍ଟ ହୋଇ ରହିଲା ।

## କିଏ ଏହି ଅଜଣା ଲୋକ ?

ଏଣେ ଉପୃଙ୍କର ବିପଦ ଆସି ଉପସ୍ଥିତ ହେଲାଣି । ବାପାଙ୍କର ରୋଗ ବଢ଼ିବାକୁ ଲାଗିଲା । ଯେତେ ଉପାୟ କଲେ ମଧ୍ୟ ଭଲଆଡ଼କୁ ଆସିଲା ନାହିଁ । ଘରର ଓ ବେନବୋର ସମସ୍ତ କାର୍ଯ୍ୟ ମାଆ ଆଉ ମୋତେ ବୁଝିବାକୁ ପଡ଼ିଲା ।

ଜାନୁୟାରୀ ମାସ । ସେ ଦିନ ହାଡ଼ଭଙ୍ଗା ଶୀତ । କନକନିଆ ଥଣ୍ଡା ପବନ ବହୁଥାଏ । ବରଫ ପଡ଼ି ଘରର ଛାତ ଝରକା ସବୁ ଧୋବ ଫରଫର ଦିଶୁଥାଏ । କାପ୍ତାନ ସମୁଦ୍ରକୂଳକୁ ବୁଲିବାକୁ ଗଲା । ହାତରେ ଦୂରବୀକ୍ଷଣ ଯନ୍ତ୍ର । କୋଟ୍‌ତଳେ ତାର ସବୁବେଳର ସାଙ୍ଗୀ ତରବାରି ଝୁଲୁଥାଏ । ଟିକିଏ ବଙ୍କେଇ ଟୋପିଟାକୁ ମୁଣ୍ଡରେ ଦେଇ ସେ ବାହାରି-ପଡ଼ିଲା । ଅନ୍ୟ ଦିନ ଟିକିଏ ଡେରିକରି ସେ ଯାଏ; ମାତ୍ର ସେ ଦିନ ସେତେବେଳକୁ ଭଲରୂପେ ସକାଳ ବି ହୋଇ ନ ଥାଏ ।

ଉପରମହଲାରେ ବାପାଙ୍କ ବିଛଣା ପାଖରେ ମାଆ ବସିଥାଆନ୍ତି । ମୁଁ ଖାଇବା ଘର ଟେବୁଲ ଠିକ୍‌ଠାକ୍ କରୁଥାଏ । ଏହି ସମୟରେ ଜଣେ ଲୋକ ଘର ଭିତରକୁ ପଶିଆସିଲା । ରକ୍ତଶୂନ୍ୟ ଦେହ । ବାମ ହାତଠାରି ମୋତେ ଡାକିଲା । ମୁଁ ଦେଖିଲି ତା ହାତର ଦୁଇଟି ଆଙ୍ଗୁଠି କଟି-ଯାଇଛି । ବେକରେ ଖଣ୍ଡାଟାଏ ଝୁଲୁଥାଏ । ଲୋକଟା ଖୋଟା କି ନୁହେଁ ଜାଣିବା ପାଇଁ ମୁଁ ବାରମ୍ବାର ଗୋଡଆଡ଼କୁ ଚାହିଁଲି । କାରଣ, ନାବିକ କହିଥିବା ଖୋଟାଲୋକ କଥା ସବୁବେଳେ ମୋ ମନକୁ ଆସୁଥାଏ; ମାତ୍ର ଗୋଡ଼ରେ କୌଣସି ଦୋଷ ନ ଥିଲା । ମୁଁ ତା ପାଖକୁ ଗଲି । ସେ ମୋତେ ପଚାରିଲା, 'ଟେବୁଲ ଉପରେ ବିଲ୍‌ର ଜଳଖିଆ ଥୁଆ ହୋଇଛି ନା ?"

ମୁଁ କହିଲି, 'କିଏ ତୁମର ବିଲ୍, ମୁଁ ତ ତାକୁ ଚିହ୍ନେ ନାହିଁ । ଏ ଜଳଖିଆ ଆମ କାପ୍ତାନ୍‌ର ।'

"ବେଶ୍, ଠିକ୍ ହେଲା, ତୁମର କାପ୍ତାନ ଯିଏ ଆମର ବିଲ୍ ସେହି । ତାହାର ଡାହାଣ ଗାଲରେ ତରବାରିର ଦାଗ ଅଛି । ବୁଝିଲ କି ?" ଲୋକଟି ମୋତେ ପଚାରିଲା ।"

ମୁଁ କହିଲି, "କାପ୍ତାନ ଯଦି ତୁମର ବିଲ୍ ହୁଏ, ତେବେ ସେ ବର୍ତ୍ତମାନ ଘରେ ନାହାନ୍ତି, ବୁଲିବାକୁ ଯାଇଛନ୍ତି ।"

"କେଉଁଆଡ଼େ ଯାଇଛି, କହ ତ ।"

"ପାହାଡ଼ ଆଡ଼କୁ ।"

"କେତେବେଳେ ଫେରିବ ?"

"ଅଳ୍ପ ସମୟ ପରେ ।"

ମୋ କଥା ଶୁଣି ସେ ପୁଣି କହିଲା, "ଚାଲ ଆମେ ଦୁଇଜଣ କବାଟ କୋଣରେ ଲୁଚି ରହିବା । ବିଲ୍ ଆସିଲେ ତାକୁ ଚମକାଇ ଦେବା ।

ଆମେ ଲୁଚି ରହିଲୁ । କବାଟ ଖୋଲାଥିଲା । ମୁଁ ଭୟରେ ସେ ଲୋକଟିର ପଛରେ ଥର ଥର ଠିଆ ହୋଇ ଦେଖୁଥାଏ । ସେ ଥରକୁ-ଥର ତରବାରିକୁ ଖୋଲୁଥାଏ ଓ ପୁଣି ସେଥିରେ ରଖିଦେଉ ଥାଏ । ସେ କ୍ରମାଗତ ଏହି କାମରେ ବ୍ୟସ୍ତ ଥାଏ । ଏହି ସମୟରେ କାପ୍ତାନ୍ କ୍ଷିପ୍ର ବେଗରେ ଆସି ଘରେ ପହଞ୍ଚିଗଲେ । କେଉଁ ଆଡ଼କୁ ନ ଚାହିଁ ସିଧା ସଳଖ ଟେବୁଲ ପାଖକୁ ଚାଲିଗଲେ । ଏହି ସମୟରେ ଲୋକଟି ଖୁବ୍ ଜୋରରେ ଡାକିଲା "ବିଲ୍ ।"

'ଡାକ ଶୁଣି' କାପ୍ତାନ୍ ସଙ୍ଗେ ସଙ୍ଗେ ଗୋଡ଼ର ଗୋଇଠି ଉପରେ ଭର ଦେଇ ବୁଲିପଡ଼ିଲା । ଆମ୍ଭଆଡ଼କୁ ମୁହଁ ବୁଲାଇବା ମାତ୍ରକେ ଲୋକଟି ସଙ୍ଗେ ମୁହାଁମୁହିଁ ହୋଇଗଲା । ମୁଁ ଦେଖିଲି ହଠାତ୍ ତା ମୁହଁ ମଲାମଣିଷ ମୁହଁ ପରି ଶେତା ପଡ଼ିଗଲା । ସତେ ଅବା ଭୂତ ଦେଖିଲା ! ସେହିଭଳି ଚମକି ଉଠି ସେ ଜୋରରେ କହି ଉଠିଲା, 'କିଏ ? ବ୍ଲାକ୍‌ଡଗ୍ ?'

"ହଁ, ବ୍ଲାକଡଗ୍ ନୁହେଁ ତ ଆଉ କିଏ ? ତୁମକୁ ଦେଖିବାକୁ ଆସିଛୁ ବନ୍ଧୁ ! କଥା ଅଛି ।"

"ଆଚ୍ଛା ବେଶ; କଣ କହିବାକୁ ଗୃହଁ କହିଯାଅ ।" ତାପରେ ଦୁହେଁ ଟେବୁଲର ଦୁଇ ପାଖରେ ମୁହଁା ମୁହିଁ ହୋଇ ବସି ରହିଲେ । ଲୋକଟି ମୋତେ କହିଲା, "ବାହାରକୁ ଯାଅ, ଆମର ଟିକିଏ କଥା-ବାର୍ତ୍ତା ଅଛି ।"

ମୁଁ ବାହାରକୁ ଆସିଲି । ମାତ୍ର ବେଶି ଦୂରକୁ ଗଲିନାହିଁ । ସେମାନଙ୍କ କଥାବାର୍ତ୍ତା ଶୁଣିବାପାଇଁ କବାଟ ପାଖରେ କାନ ଡେରି ଠିଆହେଲି । ପ୍ରଥମେ କିଛି ଶୁଣାଗଲା ନାହିଁ । କିଛି ସମୟ ପରେ ସେମାନେ ଟିକିଏ ଜୋରରେ କଥାବାର୍ତ୍ତା କରିବାରୁ ମଝିରେ ମଝିରେ ଦୁଇ ଗୃରି ପଦ କଥା ମୋ କାନରେ ପଡ଼ିଲା । ଥରେ ଶୁଣି ପାରିଲି, କାପ୍ତାନ୍ ରାଗରେ କହୁଛି, 'ନା, ନା, ନା, ଦୂର ହୋଇଯାଉ, ସବୁ ଶେଷ ହୋଇଯାଉ, ଯଦି ଝୁଲିବାକୁ ପଡ଼ିବ ତ, ମୁଁ କହେ ସମସ୍ତେ ଝୁଲନ୍ତୁ ।"

ଏହିପରି କଥା କଟାକଟିରୁ ପିଟାପିଟି ପର୍ଯ୍ୟନ୍ତ ଆଗେଇ ଗଲା । ଟେବୁଲ ବାଡ଼ିଆ ଶବ୍ଦ ଶୁଣାଗଲା । ତା'ପରେ ଟେବୁଲ ଚୌକି ଧଡ଼ ଧଡ଼ ହୋଇ ଓଲଟି ପଡ଼ିଲା । କିଛି ସମୟ ପରେ ତରବାରି ଠସ୍ ଠାସ୍ ଶବ୍ଦ ଓ ଚିତ୍କାର । କିଛିକ୍ଷଣ ଅପେକ୍ଷା କରି ଦେଖେତ ବ୍ଲାକ୍‌ଡଗ୍ ଦଉଡ଼ି ପଳାଇଯାଉଛି ।

ହାତରେ ତାର ଖୋଲା ତରବାରି । ବାଁ କାନ୍ଧରୁ ରକ୍ତ ବୋହି-ପଡ଼ୁଥାଏ । କାପ୍ତାନ୍ ପଛରୁ ଧାଇଁ ଆସି ଦ୍ୱାର ପାଖରୁ ତାକୁ ଲକ୍ଷ୍ୟକରି ଜୋରରେ ତରବାରି ଫିଙ୍ଗିଦେଲା । ଦୈବଯୋଗରୁ ତାହା ବ୍ଲାକଡଗ୍ ଦେହରେ ବାଜିଲା ନାହିଁ । ସାଇନବୋର୍ଡର ଫ୍ରେମରେ ବାଜି ତଳେ ପଡ଼ିଗଲା ।

ବ୍ଲାକ ଡଗ୍ କେଉଁଆଡ଼େ ପବନ ବେଗରେ ଅଦୃଶ୍ୟ ହୋଇ-ଗଲା । କାପ୍ତାନ ନିଜ ଆଖି ଉପରେ କିଛିକ୍ଷଣ ପର୍ଯ୍ୟନ୍ତ ହାତ ବୁଲାଇବାକୁ ଲାଗିଲା । ତା ପରେ ଧୀରେ ଧୀରେ ଘରେ ପ୍ରବେଶକଲା । ସେତେବେଳେ ତାର ସର୍ବାଙ୍ଗ ଥରୁଥାଏ । ସେ ଭଲଭାବରେ ଛିଡ଼ା ହୋଇପାରୁ ନ ଥାଏ । ଟଳି ଟଳି କାଛରେ ହାତଭରା ଦେଇ କାପ୍ତାନ୍ କହିଲା, "ଜିମ୍, ମଦ-ମଦ ।"

ମୁଁ ପଚ୍ଚରିଲି "ତୁମେ କଣ ଜଖମ ହୋଇଛ ?"

ସେ ମୋ କଥାରେ ଉତ୍ତର ନ ଦେଇ ପୁଣି ମାଗିଲା, "ମଦ ଦଅ, ମଦ ।" ମଦ ଆଣିବା ନିମନ୍ତେ ମୁଁ ଭିତରକୁ ଯାଇଛି, ହଠାତ୍ ଦାଣ୍ଡ ଘରେ କଣ ଗୋଟାଏ ଶବ୍ଦ ହେଲା । ଧାଇଁ ଆସି ଦେଖେ ତ କାପ୍ତାନ୍ ତଳେ ହାତ ଗୋଡ଼ ମେଲାଇ ପଡ଼ି ଗାଳି ପଢ଼ିରହିଛି ।

ଶବ୍ଦ ଶୁଣି ମା' ଧାଇଁ ଆସିଲେ । ମା' ଓ ମୁଁ ଧରାଧରି କରି ବହୁ କଷ୍ଟରେ ତାକୁ ତଳୁ ଉଠାଇଲୁ । ତାର ଚେହେରା ସେତେବେଳକୁ ମଲା ମଣିଷ ପରି ଦିଶୁଥାଏ, ଜ୍ଞାନ ନ ଥାଏ, ଦେଖିଲେ ଭୟ ଲାଗିବ ସେ ରୂପକୁ ।

ଆମେ ବ୍ୟସ୍ତ ହୋଇ କ'ଣ କରିବୁ ଭାବୁଛୁ; ଏହି ସମୟରେ ବାପାଙ୍କୁ ଦେଖିବା ପାଇଁ ଡାକ୍ତର ଲିଭେସି ଆସି ପହଞ୍ଚିଲେ । ଯାହାହେଉ ଆମ ପିଣ୍ଡରେ ପ୍ରାଣ ପଶିଲା । ଆମେ ନିଃଶ୍ୱାସ ମାରି ବଞ୍ଚିଲୁ । ଡାକ୍ତର ଦେଖି କହିଲେ, "କିଛି ଭୟନାହିଁ । ମଦ ଖାଇ ଏହି ଦଶା ହୋଇଛି । ହଠାତ୍ ଯେ ଦିନେ ଏମିତି କିଛି ଗୋଟାଏ ଘଟିବ, ମୁଁ ସେହିଦିନଠାରୁ ଜାଣିଥିଲି; ତେଣୁ ସାବଧାନ କରାଇଥିଲି । ବ୍ୟସ୍ତ ହେବାର କୌଣସି କାରଣ ନାହିଁ ମିସେସ୍ ହାଓକିନ ! ଆପଣ ଆପଣଙ୍କର ସ୍ୱାମୀଙ୍କ ନିକଟକୁ ଯାଆନ୍ତୁ । ତାଙ୍କୁ କିଛି ଜଣାଇବେ ନାହିଁ । ସେ ଅସୁସ୍ଥ । ମୁଁ ସବୁ ଠିକ୍ କରିଦେଉଛି ।" ତାହାପରେ ମୋତେ କହିଲେ, "ଜିମ୍, ଗୋଟିଏ କାମକର । ଶୀଘ୍ର ଗୋଟିଏ ପାତ୍ର ଆଣିଲ ।"

ମୁଁ ପାତ୍ରଟିଏ ଆଣି ପହଞ୍ଚିଲାବେଳକୁ ଡାକ୍ତର କାପ୍ତାନ୍ ହାତରୁ କୋଟ କହୁଣି ପର୍ଯ୍ୟନ୍ତ ଟେକି ଦେଇଥିଲେ । ହାତର କିଛି ଅଂଶ ଛିଣ୍ଡି ଯାଇଥିଲା । ତାର ମାଂସଳ ବାହୁ ଗୋଟାକଯାକ ଖାଲି ଲେଖା ଅକ୍ଷରରେ ପୂର୍ଣ୍ଣଥିଲା । ଗୋଟିଏ ଜାଗାରେ 'ବିଲ୍ ବୋନସ' ନାମ ଲେଖାଥିଲା । ଡାକ୍ତର ଭଲଭାବରେ ନିରୀକ୍ଷଣ କରି କହିଲେ, "ଜିମ୍ ! ଆମେ ବର୍ତ୍ତମାନ ତା ଦେହରୁ କିଛି ରକ୍ତ ବାହାର କରିବା । ତୁମେ ରକ୍ତ ଦେଖିଲେ ଭୟ କର କି ?

ମୁଁ କହିଲି, "ଆଜ୍ଞା ନାହିଁ ।"

ତା ପରେ ସେ ମୋତେ ପାଣଟି ଧରିବାକୁ କହିଲେ । ଡାକ୍ତର ଲିଭେସି ଗୋଟିଏ ଚକ୍ ଚକ୍ ଧାରୁଆ ଛୁରୀରେ ତା ହାତର ଗୋଟିଏ ଶିରା କାଟି ଦେଲେ । ପ୍ରଚୁର ପରିମାଣରେ ରକ୍ତ ବୋହିଯିବା ପରେ ତାର ଜ୍ଞାନ ଫେରି ଆସିଲା । ସେ ଚିତ୍କାର କରି ପଚାରିଲା, "ବ୍ଲାକ୍‌ଡଗ୍ କାହିଁ ?"

ଡାକ୍ତର ଲିଭେସି ବିରକ୍ତ ହୋଇ ଉତ୍ତରଦେଲେ, ବ୍ଲାକ୍‌ଡଗ୍ ତୁମ ମୁଣ୍ଡରେ ଅଛି । ଆଜ ପର୍ଯ୍ୟନ୍ତ ମଦଖିଆ ଛାଡ଼ିଲ ନ ? ସେଇଥିପାଇଁ ଆଜ ଏମିତି ଅଚେତା ହୋଇ ପଡ଼ିଲ । ତୁମେ ମରିଯାଇଥିଲେ ଠିକ୍ ହୋଇଥାନ୍ତା । ସେ ଯାହା ହେଉ ଯଦି ଟିକିଏ ଜୋର କରନ୍ତ, ତେବେ ବିଛଣାରେ ଆମ୍ଭେ ଶୁଆଇ ଦେଇପାରନ୍ତୁ ।"

ବହୁ କଷ୍ଟରେ କାପ୍ତାନ୍‌କୁ ନେଇ ବିଛଣାରେ ଶୁଆଇଦେଲୁ । ଘର ଭିତରୁ ବାହାରକୁ ଆସି ଲିଭେସି ମୋତେ କହିଲେ, "ବର୍ତ୍ତମାନ ଭୟର କୌଣସି କାରଣ ନାହିଁ । ଯଥେଷ୍ଟ ରକ୍ତ ବାହାରିଯାଇଛି । ସାତ-ଦିନ କାଳ ତାକୁ ଏହିପରି ବିଛଣାରେ ଶୁଆଇ ରଖିବ । ଏଇ ତାର ଔଷଧ ! ଆଉ ଗୋଟିଏ କଥା; ଯଦି ପୁଣିଥରେ ସେ ମଦ ଖାଇ ଅଜ୍ଞାନ ହୋଇପଡ଼େ, ତାହାହେଲେ କଦାପି ବଞ୍ଚିବନାହିଁ । ଆଚ୍ଛା ଚାଲ, ତୁମ ବାପାଙ୍କୁ ଦେଖିବାକୁ ଯିବା ।"

## ଏ ଅନ୍ଧବୁଢ଼ା କିଏ ?

ଠିକ୍ ଦ୍ୱିପ୍ରହର ବେଳକୁ ମୁଁ ଜଳଖିଆ ଓ ଔଷଧ ନେଇ କାପ୍ତାନର ଘରକୁ ଗଲି । ମତେ ଦେଖି ସେ କହିଲା 'ଜିମ୍ ! ଗୋଟିଏ ଗ୍ଲାସ ମଦ ଆଣି ଦେବନି ? ଦିଅ, ଟିକିଏ ଦିଅ" ।

ମୁଁ କହିଲି 'ଡାକ୍ତର······

ସେ ସଙ୍ଗେ ସଙ୍ଗେ ମୋ କଥାରେ ବାଧା ଦେଇ କହିଲା 'ରଖ, ରଖ ତୁମ ଡାକ୍ତରର କଥା । ଡାକ୍ତର ଦେହ ବିଷୟରେ କଅଣ ଜାଣେ ? ମଦ ଖାଇଲେ ମୋର କିଛି କ୍ଷତି ହୁଏନାହିଁ । ଦେଖ ଦେଖ ଜିମ୍ ! ମୋ

ଆଙ୍ଗୁଠି ଗୁଡ଼ାକ ଖାଲି ଥର ଥର ହୋଇ କମ୍ପୁଛି । ମୁଁ ଆଉ ସମ୍ଭାଳି ପାରୁନାହିଁ । ଟିକିଏ ମଦ ନ ଖାଇଲେ ଅଉ ଚଳିପାରିବ ନାହିଁ । ତୁମର ଏ ପେଞ୍ଚ ଡାକ୍ତର, ସିଏ ବୋକାଙ୍କର ଗୁରୁମହାଗୁରୁ । ଅଚ୍ଛା କହତ, ସମୁଦ୍ରରେ ଯାହାର ସମସ୍ତ କଟେ. ଯେଉଁମାନେ ଜାହାଜରେ କାମ କରନ୍ତି, ସେମାନେ ମଦ ନ ଖାଇ କେଉଁଠି ବଞ୍ଚିଲେଣି ? ଯାଅ ବାପା, ଯାଅ, ମୋନାମା ପରି, ଟିକିଏ ମଦ ଆଣିଦିଅ । ତା ନ ହେଲେ ବର୍ତ୍ତମାନ ମୋ ଆଖିରେ କେତେ ଭୁଲ ଘଟଣା ଦେଖାଯିବ । ହେଇ ହେଇ, ବୁଡ଼ାଫ୍ଲିଣ୍ଟ ତୁମ ପଛରେ ସେଇ କୋଣରେ ଠିଆ ହୋଇଛି । ନା, ନା, ଆଉ ପାରୁନାହିଁ, ମଦ ଆଣ, ଜଲଦି ଆଣ । ମୁଁ ତମକୁ ଗୋଟିଏ ସୁନା ମୋହର ଦେବି ।

କାପ୍ତାନ୍ କ୍ରମଶଃ ପାଟିତୁଣ୍ଡ କରିବାକୁ ଲାଗିଲା । ଏଣେ ବାପାଙ୍କ ଅବସ୍ଥା ଖରାପ । ସାମାନ୍ୟ ଗୋଳମାଳ ହେଲେ ବଡ଼ଦର ଆଶଙ୍କା । କଣ କରିବ ? କାପ୍ତାନ୍‌କୁ ଶାନ୍ତ କରିବା ପାଇଁ ଡରି ଡରି ଅଳ୍ପ ମଦ ଆଣି ଦେଲି । ଏକା ନିଃଶ୍ୱାସକେ ସେ ପେଟକ ଢୋକିଦେଇ କହିଲା "ଅଃ ! ଟିକିଏ ଭଲ ଲାଗିଲା । ଅଚ୍ଛା ଜିମ୍ ! ଏମିତି କେତେ ଦିନ ଶୋଇବାକୁ ପଡ଼ିବ; ଡାକ୍ତର କିଛି କହିଛି କି ?"

"ହଁ— କହିଛନ୍ତି । ସପ୍ତାହେ କାଳ ଶୋଇବାକୁ ହେବ ।"

କାପ୍ତାନ୍ ରାଗିଯାଇ କହିଲା, "କଣ ! ଏକ ସପ୍ତାହ ? ମରୁନାହିଁ ସେ ଡାକ୍ତର । ମୁଁ କେବେହେଲେ ଏତେ ଦିନ ଶୋଇପାରିବି ନାହିଁ । ଏହା ଭିତରେ ସେମାନେ ଏଠାକୁ ଅସି ମୋତେ କଳାଦାଗ ଦେଇଯିବେ । ସେମାନେ ମୋ ପଛରେ ଲାଗିଛନ୍ତି । ନିଜେ ଯାହା ପାଇଛନ୍ତି, ତା ତ ରଖିପାରୁ ନାହାନ୍ତି, ଖାଲି ଅନ୍ୟକୁ ଭଡ଼ା ଓଟର କରିବାରେ ବ୍ୟସ୍ତ । ମୁଁ ତ ମୋର ଟଙ୍କା ନଷ୍ଟ କରିନାହିଁ ମୁଁ ତ କ୍ଷତଗ୍ରସ୍ତ ହୋଇନାହିଁ । ତାହେଲେ ଭାବୁଛି କି ? ଯାହାହେଉ ପଛେ ଏଥର ତାଙ୍କୁ ଦେଖିନେବି । ମୁଁ କାହାକୁ ଡରିବାର ଜନ୍ତୁ ନୁହେଁ ।"

ଏହି କଥା କହୁ କହୁ ସେ ହାତ ଭର ଦେଇ ଖଟିଆ ଉପରେ ଉଠି ପଡ଼ିଲା । ଟିକେ ଦମ ନେଇ ପୁଣି ଗର ଗର ହୋଇ କହିବାକୁ ଲାଗିଲା, "ଡାକ୍ତରଟା ମୋତେ ଆଜ୍ଞା ହଇରାଣରେ ପକାଇଛି । ଓଃହୋ କାନ ଖାଲି ଝାଁ ଝା ହେଉଛି । ମୋତେ ବିଛଣାରେ ଶୁଆଇ ଦିଅ ।"

ମୁଁ ଧରିବାକୁ ଯିବା ପୂର୍ବରୁ ସେ ବିଛଣାରେ ପଡ଼ିଗଲା । କିଛି ସମୟ ନୀରବ ରହି ପୁଣି ଚିତ୍କରିଲା, 'ଜିମ୍ ! ଆଜି ସେହି ନାବିକକୁ ପୁଣି ଦେଖିଛ କି ?'

"ସେହି ବ୍ଲାକଡଗ କଥା କହୁଛ ?"

"ସେହି ବ୍ଲାକଡଗ, ସେ ଭାରି ଦୁଷ୍ଟଲୋକ । ମୋତେ ଏହିକ୍ଷଣି କଳା ଦାଗ ଦେଇଯିବ । ସେମାନେ ମୋର ସିନ୍ଦୁକଟାକୁ ହାତ କରିବାକୁ ଚେଷ୍ଟା କରୁଛନ୍ତି । ତୁମେ ଘୋଡ଼ା ଚଢ଼ି ପାରିବନାହିଁ ? ଆଜ୍ଞା ବେଶ, ବେଶ, ଘୋଡ଼ା ଚଢିକରି ତୁମେ ନ ହେଲେ ମୁଁ ନିଜେ ସେହି ଡାକ୍ତର ଘରକୁ··· । ଆଚ୍ଛା ବେଶ୍ ତ, ତୁମେ ଯାଇ ତାକୁ କୁହ ଏଡ଼ମିରାଲ ବେନବୋର ସ୍ଥରଆଡ଼େ ଲୋକେ ଘେରାଉ କରନ୍ତୁ । ଫ୍ଲିଣ୍ଟର ମୁଁ ପ୍ରଥମ ବନ୍ଧୁ ଥିଲି । ଏକ ମାତ୍ର ମୁଁ ସେ ସ୍ଥାନ ଦେଖିଛି । ମୃତ୍ୟୁ ସମୟରେ ସେ ମୋତେ ଏଇଟା ଦେଇଯାଇଥିଲା । ସେ ଯାହାହେଉ, ବର୍ତ୍ତମାନ କଳା ଦାଗ ନ ଆଣିଲେ ଆପଦ ଯିବ । ସେ ଏକଗୋଡ଼ିଆ ଲୋକଟା ନାବିକଟାକୁ —ଆଃ ଥାଉ—ତୁମକୁ କଣ କହିବି ଜିମ—ସବୁଠାରୁ ଭୟଙ୍କର କଥା ।

ମୁଁ ପଚାରିଲି—କାପ୍ତାନ୍ ! କଳାଦାଗ ଜିନିଷଟା କଣ ?

କାପ୍ତାନ୍ ଉତ୍ତର ଦେଲା, "ସେଇଟା ଗୋଟାଏ ସମନପତ୍ର । ଯଦି ସେମାନେ ସେଇଟା ନେଇ ଆସନ୍ତି, ତେବେ ପଛେ ସବୁ ଘଟଣା ଖୋଲି କରି କହିବି । କିନ୍ତୁ ଜିମ ! ତୁମ୍ଭେ ଭଲକରି ସ୍ଥରଆଡ଼େ ନଜର ରଖିଥାଅ । ଯଦି ତାକୁ ଦେଖ ତୁମକୁ ରାଣ ଦେଇ କହୁଛି, ଅଧେ ତୁମର ଆଉ ଅଧେ ମୋର ।"

ଅନେକକ୍ଷଣ ପର୍ଯ୍ୟନ୍ତ ସେ ଏହି ଭାବରେ ପ୍ରଳାପ କରିବାକୁ ଲାଗିଲା । ମୁଁ ତାକୁ ଔଷଧ ଦେବା ସଙ୍ଗେ ସଙ୍ଗେ ସେ ଶୋଇପଡ଼ିଲା । ମୁଁ ଚାଲି ଆସିଲି ।

ହଠାତ୍ ସେଦିନ ସନ୍ଧ୍ୟାରେ ବାପା ଆମକୁ ଛାଡ଼ି ଚାଲିଗଲେ । ରାତିସାରା କନ୍ଦାକଟାରେ କଟିଗଲା । କାପ୍ତାନ୍‌ର କଥା ମୋର ଥରେ ହେଲେ ମନେ ନ ଥାଏ ।

ପରଦିନ ସକାଳେ କାପ୍ତାନ୍‌ର କାଣ୍ଡ ଦେଖି ମୁଁ ଏକାବେଳେ ଅବାକ୍ ହୋଇଗଲି । ସିଡ଼ି ଉପରକୁ ଉଠୁଛି, ପୁଣି ଓହ୍ଲାଇ ଆସୁଛି । ବାହାର ଘରକୁ ଯାଉଛି, ପୁଣି ଚାଲି ଆସୁଛି । ସ୍ଥିର ହୋଇ ମୁହୂର୍ତ୍ତେ ହେଲେ ବସୁନାହିଁ । ଖାଲି ଅନବରତ ଏପଟ ସେପଟ ହେଉଥାଏ । ଥରେ ଖୋଲରୁ ଖଣ୍ଡା କାଢ଼ି ଟେବୁଲ ଉପରେ ରଖିଲା । ଝରକାବାଟେ ବାହାରକୁ ମୁହଁ ଗଳେଇ ଠିଆ ହୋଇ ରହିଲା । କିଛିକ୍ଷଣ ପରେ ପୁଣି ଫେରିଆସିଲା । କଅଣ ସେ ଭାବୁଥାଏ କେଜାଣି ? ଏକେତ ଶରୀର ଦୁର୍ବଳ; କେତେବେଳେ କଅଣ ହେବ ତାର ଠିକଣା ନାହିଁ । ନିଃଶ୍ୱାସ ଉପରକୁ ଉଠିଲାଣି; ଭଲ କରି ଚାଲିପାରୁନାହିଁ । ତଥାପି ସେ ସେହି ଦୁର୍ବଳ ଦେହରେ ଘୂରି ବୁଲୁଥାଏ । ମଝିରେ ମଝିରେ ଝରକା ଉପରେ ହାତ ଭରାଦେଇ ଟିକିଏ ଦମ ନିଏ । ଏହିପରି ଭାବରେ ସାରା ସକାଳଟା କଟିଗଲା । ତାର କି ଭୟାନକ ଚେହେରା ! ତାକୁ ଦେଖି ଡରରେ ମୋ ଦେହ ଥରି ଉଠୁଥାଏ ।

ସନ୍ଧ୍ୟାବେଳେ ଦାଣ୍ଡ କବାଟ ପାଖରେ ବାପାଙ୍କ କଥା ଭାବୁଥାଏ । ମନଟା ଭାରି ଖରାପ ଥାଏ । ଏହିପରି ସମୟରେ ଦେଖେ ତ କିଏ ଜଣେ ରାସ୍ତାରେ ଆସ୍ତେ ଆସ୍ତେ ଆମ ଘରଆଡ଼କୁ ଆସୁଛି । ବାଡ଼ି ଠକ୍ ଠକ୍ କରି ସେ ବାଟ ଚାହିଁ ଆସୁଥାଏ । ଟିକିଏ ଭଲ କରି ଚାହିଁ ଦେଖିଲି ଯେ ସେ ଅନ୍ଧ । ଖଣ୍ଡେ ଲେଟିଆ ଶାଗୁଆ କନା ତାର ଆଖି ଓ ନାକ ଉପରେ ଘୋଡ଼ା ହୋଇଛି । ବୟସ ବହୁତ ହେଲାଣି, ନଇଁ ଗଲାଣି । ମନେ ହେଲା ସେ ଯେପରି ଭାରି ଦୁର୍ବଳ । ଗୋଟିଏ ଢ଼ିଲା ଜାମା ପିନ୍ଧିଥାଏ । କି କଦାକାର ରୂପ ! ଦେଖିଲେ ଭୟ ହେବ । ଜୀବନରେ ଏପରି ରୂପ କେବେ ଦେଖି ନ ଥିଲି ।

ବେନ୍‌ବୋ ନିକଟକୁ ଆସି ଠିଆହେଲା । ଘାଉଁ ଘାଉଁଆ ଅଦ୍ଭୁତ ସ୍ୱରରେ ସେ ଆପଣା ମନକୁ ମନ କହିଗଲା, "ଏଠାରେ କେହି ବନ୍ଧୁ ଅଛନ୍ତି

କ ଯେ ଦସ୍ୟାଙ୍କର ବନ୍ଧୁର ଅନ୍ଧଟିକୁ କହିଦେବ ସେ ବର୍ତ୍ତମାନ କେଉଁଠି ? ସେ ଯେ ନିଜର ଦେଶ ଇଂଲଣ୍ଡକୁ ରକ୍ଷା କରିବାକୁ ଯାଇ ତାର ଅମୂଲ୍ୟ ଦୃଷ୍ଟି ଶକ୍ତି ହରାଇଛୁ । ରାଜା ଜର୍ଜଙ୍କୁ ଭଗବାନ ଆଶୀର୍ବାଦ କରନ୍ତୁ ।"

ତା କଥା ଶେଷହେଲାରୁ ମୁଁ କହିଲି, 'ଶୁଣ ! ତୁମେ ବର୍ତ୍ତମାନ ଏଡ଼ମିରାଲ ବେନ୍‌ବୋ ନିକଟକୁ ଆସିଛ ।'

ମୋ କଥା ଶୁଣି ସେ କହିଲା, "ଗୋଟିଏ ସାନପିଲାର କଣ୍ଠସ୍ୱର ଶୁଣାଗଲା—ଗୋଟିଏ କଅଁଳ ସ୍ୱର । ମୋ ହାତ ଧରି ଭିତରକୁ ନେଇ ଯାଅ ତ ବାପା ! ମୋତେ ଟିକିଏ ସାହାଯ୍ୟ କର, ତୁମର ମଙ୍ଗଳ ହେବ ।

ତା' କଥା ଶୁଣି ମୁଁ ହାତ ବଢ଼ାଇ ଦେଲି । ଯାହାର କଥା ଏତେ କଅଁଳ, ସେ ଯେ ମୋ ହାତକୁ ଏତେ ଜୋରରେ ଭିଡ଼ି ଧରିବ, ତା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲି । ସେ ଏମିତି ଭାବରେ ମୋ ହାତକୁ ଜାବୁଡ଼ି ଧରିଲା ଯେ ମୋ ହାଡ଼ ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଗଲା ପରି ଲାଗିଲା । ମୁଁ ଚମକି ପଡ଼ି ହାତ ଛଡ଼ାଇ ନେବାକୁ ଚେଷ୍ଟାକଲି ! ମାତ୍ର ଯାଏ କୁଆଡ଼େ ବୁଢା ଦେହରେ ଯେ ଏତେ ବଳ ମୁଁ ଜାଣିନ୍ତି କୁଆଡ଼ୁ ? ସେ ମୋତେ ଭିଡ଼ି ଧରି ପ୍ରାୟ ପାଖକୁ ଟାଣିନେଲା ।

## କାପ୍ତାନ ମରିଗଲା

ସେହି କଦାକାର ଅନ୍ଧ ଲୋକଟି ମୋ ହାତମୁଠାଇ ଧରି କହିଲା, "ହେ ବାପା ମତେ ଟିକିଏ କାପ୍ତାନ୍ ପାଖକୁ ନେଇ ଚାଲ ।

ମୁଁ କହିଲି—ଦେଖ, ତାଙ୍କ ଅବସ୍ଥା ଭଲ ନୁହେଁ । ଏପରି ଅବସ୍ଥାରେ ସତ କଥା କହିବାକୁ ଗଲେ ତୁମକୁ ତାଙ୍କ ପାଖକୁ ନେଇ ଯିବାକୁ ମୋର ସାହସ ହେଉନାହିଁ ।'

ମୋ କଥା ଶୁଣି ଅନ୍ଧ ଖିଙ୍କାରି ଉଠିଲା । ମୁହଁ ବିକୃତ କରି କହିଲା ଓହୋ ବଡ଼ କଥାଟା ଏତ । ଗୋଳମାଳ ନ କରି ଶୀଘ୍ର ମୋତେ ଧରି ଚାଲ ।



( ରଖ୍ ରଖ ସେ ସବୁ ବାଜେ କଥା )

ନଚେତ୍ ମଜା ବାହାରିଯିବ । ତୋ ହାତଟିକୁ ଚିରଦିନ ପାଇଁ ଭାଙ୍ଗି ଦେଇଯିବ । ବୁଝିଲୁ ?

ସଙ୍ଗେ ସଙ୍ଗେ ଅନ୍ଧ ପରି ଏମିତି ଜୋରରେ ମୋର ହାତକୁ ମୋଡ଼ି ଦେଲା ଯେ, ମୋ ଦେହରୁ ପ୍ରାଣ ଛୁଟିଗଲା ପରି ଲାଗିଲା । ମୁଁ ଚିତ୍କାର କରି ଉଠିଲି, "ବାପ୍‌ରେ—ମରିଗଲି ! !"

ସେ ତା ମୁଠା ଟିକିଏ କୋହଳ କଲାରୁ କହିଲା, "ମୁଁ ତୁମକୁ ନେଇ ଯାଇପାରେ; କିନ୍ତୁ ତୁମରି ଭଲ ପାଇଁ କହୁଛି, ବିପଦ ଘଟିବ । କାପ୍ତାନ୍ ଆଉ ପୂର୍ବ ଅବସ୍ଥାରେ ନାହିଁ । ସେ ପାଗଳ ହୋଇଯାଇଛି । ଖଣ୍ଡା ଧରି ବସିଛି । ବ୍ଲାକଡଗ୍ ବୋଲି ଆଉ ଜଣେ ଲୋକ···" ।

ମୋ ପାଟିରୁ କଥା ସରିନାହିଁ, ସେ ଧମକ ଦେଇ କହିଲା, "ରଖ୍- ରଖ୍ ସେ ସବୁ ବାଜେ କଥା, ମୋତେ ଶୀଘ୍ର ନେଇ ଚାଲ ।"

ଅନ୍ଧଟା କି ଭୟଙ୍କର ଲୋକ ! ତା କଥା ପରି ଏମିତି ଶାଣ୍ଢିଆ ଠୋ ଠୋ କଥା ଜୀବନରେ ମୁଁ ଶୁଣି ନ ଥିଲି । କି କର୍କଶ ସ୍ୱର ! ଶୁଣିଲେ କଲିଜା ଥରିଉଠିବ । ସ୍ୱର ଶୁଣି ଭୟରେ ମୁଁ ଚୁପ ହୋଇଗଲି । ତିଳେ ହେଲେ ଆପତ୍ତି ନ କରି ସିଧା ସିଧା ଘରଭିତରକୁ ଚାଲିଲି । ସେ ବଜ୍ର ମୁଷ୍ଟିରେ ମୋ ହାତକୁ ଚାପି ଧରିଥାଏ । ତା ଦେହର ସମସ୍ତ ଭାର ମୋ ଉପରେ ଲଦି ହୋଇଯାଇଥାଏ । ମୁଁ ଅତି କଷ୍ଟରେ ଚାଲୁଥାଏ । ମନେ ହେଉଥାଏ ସତେ ଯେପରି ମୋ ଉପରେ କିଏ ପ୍ରକାଣ୍ଡ ପଥରଟାଏ ଲଦିଦେଇଛି ।

ଯାଉ ଯାଉ ସେ କହିଲା, 'ଦେଖ, ବାଟରେ କେଉଁଠି ରହିବୁ ନାହିଁ । ସିଧା କାପ୍ତାନ୍ ପାଖକୁ ମୋତେ ନେଇଚାଲ । ମୁଁ ତା ପାଖରେ ପହଞ୍ଚିବା ମାତ୍ରକେ ଚିତ୍କାର କରି କହିବୁ, 'ବିଲ୍, ହେଇଟି ଦେଖ୍, ତୁମ ବନ୍ଧୁ ଆସିଛି ।"

ଏତିକି କହି ସେ ପୁଣି ଥରେ ମୋ ହାତକୁ ମୋଡ଼ିଦେଲା । ଝିଙ୍କା- ଟାଏ ଦେଇ ପଚାରିଲା 'ବୁଝିଲୁ ତ ?'

ମୁଁ କାପ୍ତାନ୍‌କୁ ଭୟକରେ ସତ, ମାତ୍ର ଏ ଭୟ ତୁଳନାରେ ତାହା କଛି ନୁହେଁ । ମୁଁ ଘରେ ପଶି ତା କଥା ଅନୁସାରେ ପାଟିକରି କହି ଉଠିଲି, "ବିଲ୍, ହେଇଟି ଦେଖ, ତୁମର ବନ୍ଧୁ ଆସିଛନ୍ତି ।"

କାପ୍ତାନ୍ ଘରେ ବସି ମଦ ନିଶାରେ ଝିମୁଥିଲା । ମୁଁ ପାଟିକରି ଉଠିବାରୁ ସେ ଆଖିମେଲି ଚାହିଁଲା । ତାର ମଦ ନିଶା ଛାଡ଼ିଗଲା । ଗମ୍ଭୀର ମୂର୍ତ୍ତି, ସ୍ଥିର ଦୃଷ୍ଟିରେ ସେ ଅନାଇ ରହିଲା । ବହୁ କଷ୍ଟରେ ସେ ସମସ୍ତ ଶକ୍ତି ଦେଇ ଉଠିବାକୁ ଚେଷ୍ଟାକଲା; ମାତ୍ର ଅତି ଦୁର୍ବଳହୋଇ ପଡ଼ିଥିବାରୁ ଆଉ ଉଠିପାରିଲାନାହିଁ ।

ଅନ୍ଧ ଲୋକଟା କହିଲା, "ଉଠିବାର ଦରକାର ନାହିଁ ବିଲ୍, ଯେଉଁଠି ବସିଛ ସେଇଠି ଥାଅ । ଆଖି ନ ଥିଲେ କଣ ହେଲା, ମୋର କାନ ଅଛି । ଟୁଁ କରି ଶବ୍ଦ ହେଲେ ମୋର କାନକୁ ଶୁଣାଯିବ । ସବୁ କାମରେ ନିୟମ ମାନି ଚଳିବା ଉଚିତ । ବାମ ହାତଟା ବଢ଼ାଇ ଦିଅତ । ତା ପରେ ମୋ ହାତକୁ ପୁଣି ଝାଙ୍କି ଦେଇ କହିଲା, "ଏ ବାପ, ତା ହାତକୁ ମୋ ଡାହାଣ ହାତ ପାଖକୁ ନେଇଆସ ତ ।

ଭୟରେ ମୋ ପାଟିରୁ କଥା ବାହାରୁ ନ ଥାଏ, ଦେହ ଯେପରି ଅବଶ ହୋଇ ପଡ଼ିଥାଏ । ମୋ ଅଜାଣତରେ ହାତଟା ତା କଥା ଅନୁ-ସାରେ କାମ କରି ଯାଉଥାଏ ।

ଆମ୍ଭେ ଦୁଇଜଣ ତା କଥା ମାନିଲୁ । କାପ୍ତାନ୍ ତା ହାତ ବଢ଼ାଇ ଦେଲା । ମୁଁ ସେଇ ହାତଟିକୁ ଅନ୍ଧର ଡାହାଣ ହାତ ପାଖକୁ ଆଣିଲି । ସଙ୍ଗେ ସଙ୍ଗେ ଅନ୍ଧ ଲୋକଟି ନିଜ ହାତ ମୁଠାରୁ ଖଣ୍ଡେ କାଗଜ ବାହାରି କରି କାପ୍ତାନ୍‌ର ହାତପାପୁଲି ଭିତରେ ଗୁଞ୍ଜିଦେଲା । କାପ୍ତାନ୍ ମଧ୍ୟ ଚଟ୍‌କରି ହାତ ମୁଠାଇ କାଗଜ ଖଣ୍ଡିକୁ ଚାପିଧରିଲା । କାଗଜ ଦେଇସାରି ଅନ୍ଧ କହିଲା 'ବେଶ, ଛୁଟିଗଲା ।' ଏହା କହି ମୋ ହାତ ଛାଡ଼ିଦେଇ ରାସ୍ତାକୁ ଡ଼େଇଁ ପଡ଼ିଲା । ଯୋରରେ ପାଦ ପକାଇ ଚାଲିବାକୁ ଲାଗିଲା ।

ମୁଁ ପଥର ପରି ନିଶ୍ଚଳ ହୋଇ ଯାଇଥାଏ । କିନ୍ତୁ ସମସ୍ତେ ସେଇମିତି ଠିଆ ହୋଇ ତା ବାଡ଼ିର ଶବ୍ଦ ଶୁଣିବାକୁ ଲାଗିଲେ । ଠକ୍ ଠକ୍, ଠକ୍ ଠକ୍ । ଶବ୍ଦ କ୍ରମେ ଦୂରରୁ ଦୂରତର ହେଲା । ତା ପରେ ଆଉ ଶବ୍ଦ ଶୁଣାଗଲା ନାହିଁ । ଆମ୍ଭମାନଙ୍କର ବୋଧହୁଏ ଜ୍ଞାନ ନ ଥିଲା । ସେତେବେଳ ପର୍ଯ୍ୟନ୍ତ ମୁଁ ପୂର୍ବପରି କାପ୍ତାନ୍‌ର ହାତ ଧରିଥାଏ । କାପ୍ତାନ୍ ତା' ହାତ ମୁଠାଇ ବସିଥାଏ । ମୁଁ ହାତ ଛାଡ଼ିଦେବା ସଙ୍ଗେ ସଙ୍ଗେ ସେ ତା' ହାତକୁ ଟାଣିନେଲା । ମୁଠା ଖୋଲି କାଗଜ ଖଣ୍ଡକୁ ଗୃହିଁ ପାଟିକରି ଉଠିଲା, "ଦଶଟା ସମୟରେ ।" ଘଣ୍ଟାକୁ ଗୃହିଁଦେଇ ପୁଣି ଆଉ ୬ ଘଣ୍ଟା —ବର୍ତ୍ତମାନ ମଧ୍ୟ ସମୟ ଅଛି ।

ଗଳାର ଉତ୍ତେଜନାରେ ସେ ପାଦ ଉପରେ ଭରଦେଇ ଡେଇଁପଡ଼ି ଠିଆହେଲା; କିନ୍ତୁ ରୁଗ୍‌ଣ ଶରୀର । ମୁଣ୍ଡ ଘୂରାଇ ହୋଇ ଅସ୍ୱାଭାବିକ ଶବ୍ଦ କରି ତଳେ ମୁହଁମାଡ଼ି ପଡ଼ିଗଲା ।

ମୁଁ ପାଟିକରି ଉଠିଲି । ମାଆ ମାଆ ଡାକି ତାଙ୍କ ପାଖକୁ ଦୌଡ଼ିଗଲି; କିନ୍ତୁ ବୃଥା ମୋର ଚେଷ୍ଟା । ମୁଣ୍ଡକୁ ରକ୍ତ ଉଠି ସେ ଅଜ୍ଞାନ ହୋଇ ଯାଇଥିଲା । ମୁଁ ତାକୁ ହଲାଇ ଦେଲି । ସମଗ୍ର ଶରୀରଟା ହଲିଗଲା । ନିଃଶ୍ୱାସ ବାରି ଦେଖିଲି, ତାହା ବନ୍ଦ । ସେ ଯେ ମରିଯାଇଛି, ଏହା ବୁଝିବାକୁ ଆଉ ବାକି ରହିଲାନାହିଁ ।

ମୁଁ କେବେହେଲେ କାପ୍ତାନ୍‌କୁ ଭଲ ପାଉନଥିଲି । ତଥାପି ସେ ମରିଯିବାର ଦେଖି କାହିଁକି କେଜାଣି ଖୁବ୍ ଜୋରରେ ପାଟିକରି କାନ୍ଦି ଉଠିଲି ।

## ବିପଦ ପରେ ବିପଦ

ମୋ ପାଟି ଶୁଣି ମାଆ ସେ ଘରକୁ ଦଉଡ଼ି ଆସିଲେ । ସେତେବେଳକୁ ମୋର ସର୍ବାଙ୍ଗ ଥରୁଥାଏ । ମାଆ ନାବିକ ମରିପଡ଼ିବାର ଓ ମୁଁ ଠିଆହୋଇ ଥରୁଥିବାର ଦେଖି ବୋଧହୁଏ କିଛି ବୁଝିପାରିଲେ ନାହିଁ, ମୋ ମୁହଁକୁ ଗୃହିଁରହିଲେ । ସେ ଗୃହାଣୀରୁ ଜଣାପଡ଼ୁଥାଏ ଯେପରି ସେ ମୋତେ ପଗ୍ଚରୁଛନ୍ତି, କଥା କଅଣ ?

ଉପୂରେ ମୋ ପାଞ୍ଚି ଖନ ବାଜିଯାଉଥାଏ । ତଥାପି କାଳ ବିଳମ୍ବ ନ କରି ମୁଁ ଆଜିପର୍ଯ୍ୟନ୍ତ ଯାହା କଛୁ ଶୁଣିଥିଲି, ଯାହାକଛୁ ଦେଖିଥିଲି, ଯାହା ମନେ ଭାବିଲି, ସବୁ ଗୋଟି ଗୋଟି କରି ମାଆଙ୍କ ଆଗରେ କହିଦେଲି । ସେହି ବୃଦ୍ଧ ନାବିକର କଥା, ଲିଭେସିଙ୍କ ଘରକୁ ଯିବାକଥା, ଲୁହା ସିନ୍ଦୁକକୁ ହାତକରିବା କଥା ସବୁ ଏକା ନିଃଶ୍ୱାସରେ କହିଗଲି । ଅବଶ୍ୟ କଳାଦାଗର କଥା, ଅନ୍ଧ ଲୋକ ଓ ବ୍ଲାକଡ଼ଗର କଥା ମାଆଙ୍କୁ ମୋର ଅନେକ ଆଗରୁ କହିବା ଉଚିତ୍ ଥିଲା । ସେ ଯାହାହେଉ ବର୍ତ୍ତମାନ କଣ କରିବ ? ବାପା ମରିଯାଇଛନ୍ତି—ମୁଁ ସେତେବେଳେ ପିଲାଲୋକ । ମାଆଙ୍କୁ ଧରି ଏକଲା ଏ ଘରେ ରହିବି କପରି ? ହୁଏତ ସେହି ଅନ୍ଧ ଲୋକଟି ତାର ଦଳବଳ ଧରି ଶୁଣି ଫେରି ଆସିବ, ଲୁଟପାଟ କରିବ । ଓହୋ—କି ଭୟାନକ ଚେହେରା । ହୁଏତ ନିକଟସ୍ଥ କୌଣସି ଜାଗାରେ ସେ ବୁଲୁଚି । ଏହିକ୍ଷଣି ଆସି ପହଞ୍ଚିବ । ଏଣେ ଦାଣ୍ଡଘରେ କାପ୍ତାନ୍ ଜିଭ କାଡିକରି ପଡ଼ିଛି । ବାପ୍‌ରେ ବାପ୍ । ଭୟ ଓ ଚିନ୍ତାରେ ମୁଁ ବିବ୍ରତ ହୋଇପଡ଼ିଥିଲି ।

ମୁଣ୍ଡ ଉପରେ ଏତେ ବଡ଼ ବିପଦର ଆଶଙ୍କା । ଏଣେ ଟଙ୍କା ପଇସାର ଘୋର ଅଭାବ । କାପ୍ତାନ୍ ନିକଟରୁ ଆମର ଅନେକ ଟଙ୍କା ପାଉଣା ଅଛି । ବର୍ତ୍ତମାନ ଆଉ ଟଙ୍କା ମିଳିବ କପରି ? ସିନ୍ଦୁକ ଭାଙ୍ଗି ଟଙ୍କା କାଢ଼ିବାକୁ ଯାଇ ଯଦି ବିଳମ୍ବ ହୁଏ, କିଏଜାଣି କେଉଁ ଅଜଣା ବିପଦ ଆସି ପଡ଼ିବ, ତା କିଏ କହିବ ? ମାଆଙ୍କୁ ସଙ୍ଗରେ ଧରି ଡାକ୍ତର ଲିଭେସିଙ୍କ ଘରକୁ ଯିବା ସହଜ କଥା ନୁହେଁ । ଏଣେ ମାଆଙ୍କୁ ଏକୁଟିଆ ଏ ଅନିଶ୍ଚିତ ବିପଦ ମଧ୍ୟରେ ଛାଡ଼ିଦେଇ ମୁଁ ବା ଯିବି କପରି ? ଆଉ ଅଧିକ କ୍ଷଣ ଏହିପରି ଅସହାୟ ଅବସ୍ଥାରେ ଏଠାରେ ରହିବା ଆମ୍ଭ ପକ୍ଷରେ ଆଦୌ ଉଚିତ୍ ନୁହେଁ । ସେମାନେ ଫେରି ଆସି କି ବିପଦ ଘଟାଇବେ କିଏ ଜାଣେ ? ପ୍ରାଣରେ ମାରି ପକାଇବା ସେମାନଙ୍କ ପକ୍ଷରେ ବିଚିତ୍ର ନୁହେଁ ।

ଏହିପରି କେତେ କଅଣ ଭାବନା ମନରେ ଖେଳିବାକୁ ଲାଗିଲା । ମାଆ ପରାମର୍ଶ ଦେଲେ, "ଚାଲ ନିକଟସ୍ଥ ଗ୍ରାମକୁ ଯିବା । ଲୋକମାନଙ୍କୁ

ସବୁ କଥା କହି ସେମାନଙ୍କ ସାହାଯ୍ୟ ମାଗିବା । ଏହି କଥା ଅନୁସାରେ ମାଆ ଓ ମୁଁ ଏକା ନିଃଶ୍ୱାସରେ ଗ୍ରାମ ଆଡ଼କୁ ଦଉଡ଼ିଲୁ ।

ମୁଁ ଧାଉଁଥାଏ, ପୁଣି ମଝିରେ ମାଆଙ୍କ ହାତ ଧରି ପଛକୁ କାନ ଡେରି ଠିଆହୋଇଯାଏ । ମନରେ ଭାବେ, କେଉଁଠାରେ କିଛି ଶବ୍ଦ ହେଲା କି ? ଆମ ହୋଟେଲ ଉପରେ କିଏ ଚଢ଼ଉ କଲା କି ?

କିନ୍ତୁ ନଦୀର କଳ କଳ ଶବ୍ଦ ଓ ପକ୍ଷୀମାନଙ୍କର ଚିଁ ଚିଁ ରବ ବ୍ୟତୀତ ଆଉ କିଛି ଶୁଣାଯାଏ ନାହିଁ । ଏହିପରି ଅବସ୍ଥାରେ ଯାଇ ମାଆ ଓ ମୁଁ ଗ୍ରାମ ମଧ୍ୟରେ ପହଞ୍ଚିଲୁ । ଲୋକମାନଙ୍କୁ ସବୁ କଥା କହିଲୁ ଏବଂ ଏ ବିପଦରେ ଆମକୁ ସାହାଯ୍ୟ କରିବାକୁ ଅନୁରୋଧ କଲୁ । ଆମ ନିବେଦନ—ସମସ୍ତେ ଆମ ସାଙ୍ଗରେ ଗଲେ ବେନବୋ ରକ୍ଷା ପାଇଯିବ । ସିନ୍ଦୁକ ଖୋଲି ଟଙ୍କା ପାଇବା ମଧ୍ୟ ସମ୍ଭବ ହୋଇପାରିବ ।

କିନ୍ତୁ ଆମ ସକଳ ନିବେଦନ ବୃଥା ହେଲା । ଜଣେ ହେଲେ କେହି ବେନବୋ ପାଖକୁ ଯିବା ଲାଗି ଗୋଡ଼ କାଢ଼ିଲେ ନାହିଁ । ନାବିକ କଥା ଶୁଣି ସମସ୍ତେ ଥରହର । କ୍ୟାପ୍ଟେନ୍ ଫ୍ଲିଣ୍ଟର ନାମ ସମସ୍ତେ ଆଗରୁ ଶୁଣିଛନ୍ତି । ସେ ନାଁରେ ଏତେ ଭୟ, ସମସ୍ତେ ଶୁଣି କଳାକାଠ ହୋଇ-ଯାଉଛନ୍ତି । ତାହା ଆମେ ଆଗରୁ ଜାଣି ନ ଥିଲୁ । ଯେତେ ବିପଦ କଥା କହି ଆମେ କାକୁତି ମିନତି କରୁ ସେମାନେ ସେତିକି ଭୟରେ କମ୍ପି-ଉଠନ୍ତି । କୌଣସିମତେ ସେମାନେ ଆମ ହୋଟେଲ ପାଖକୁ ଆସିବାକୁ ରାଜି ହେଲେନାହିଁ । ବହୁ ନେହୁରା ପରେ କେହି କେହି ଡାକ୍ତର ଲିଭେସିଙ୍କ ଘର ପର୍ଯ୍ୟନ୍ତ ଯିବାପାଇଁ ସାହସ କଲେ ।

ସେମାନଙ୍କର ଏଭଳି ଭୟ ଦେଖି ମାଆ କହିଲେ, "ବାପଛେଉଣ୍ଡ ଏ ପିଲାର ପାଉଣା ଟଙ୍କା ମୁଁ କେବେହେଲେ ଛାଡ଼ିଯିବାକୁ ଦେବନାହିଁ । ସେ ଟଙ୍କା ମୋର ନିହାତି ଦରକାର । ମୋତେ ଟିକିଏ ସାହାଯ୍ୟ କରି-ବାକୁ ତୁମମାନଙ୍କ ଭିତରୁ କାହାରି ଯଦି ଟିକିଏ ହେଲେ ସାହସ ହେଉ-ନାହିଁ, ତେବେ ଥାଉ, ଆମ୍ଭେ ଏକାଯିବୁ । ଜିମ୍ ଯିବ, ମୁଁ ଯିବି । ଧିକ୍ ତୁମମାନଙ୍କ ଜୀବନକୁ । ପୁରୁଷ ପୁଅ ହୋଇଛ । ଅଥଚ ନାରୀମାନଙ୍କ ପରି

ଭୟରେ କାତର ହୋଇ ପଡ଼ନ୍ତୁ ! ସେହି ସିନ୍ଦୁକ ଆମେ ନିଶ୍ଚୟ ଖୋଲିବୁ, ତେଣିକି ଯାହା ଆମ କପାଳରେ ଥିବ । ମରିବାକୁ ଯୋଗ ଥିଲେ ମରିବୁ, ତାହା ବରଂ ଭଲ, କିନ୍ତୁ ପଛକୁ ହଟିବୁ ନାହିଁ ।

ଡଃ ଲିଭେସିଙ୍କୁ ଖବର ଦେବାପାଇଁ ଲୋକ ପଠାଇ ମୁଁ ମାଆଙ୍କ ସଙ୍ଗେ ହୋଟେଲକୁ ବାହାର ଆସିଲି । ଆଗରୁ ଗୋଟିଏ ଗୁଳିଭର୍ତ୍ତି ପିସ୍ତଲ ସଂଗ୍ରହ କରି ପାଖରେ ରଖିଥାଏ । ଯଦି ମରେ ତେବେ ଅନ୍ତତଃ ଜଣକୁ-ହେଲେ ମାରି ତାହା ପରେ ମରିବ ।

ଟିକେହେଲେ ପାଟିଗୁଣ୍ଡ ନ କରି ଧାଇଁ ଧାଇଁ ଆସି ଆମେ ଖୁବ ଶୀଘ୍ର ବେନବୋର ଦରଜା ନିକଟରେ ପହଞ୍ଚିଲୁ । ସେତିକିବେଳକୁ ବେଶି ରାତି ହୋଇ ଗଲାଣି । ଅନ୍ଧାର ଯାଇ ଗୁହଆଡ଼େ ଜହ୍ନ ଆଲୁଅ ଝଲ୍କେଇ ହୋଇ ପଡ଼ଥାଏ । ମନରେ ଅତି ବେଶି ଭୟ; ମାତ୍ର ରାସ୍ତାରେ ସେପରି ଭୟର କିଛି କାରଣ ଜଣାପଡ଼ିଲା ନାହିଁ ।

ଘରେ ପ୍ରବେଶ କରିବା ମାତ୍ରେ ଦମ୍ ଅଟକି ଗଲା । ଘର ତ ଏକେ ଅନ୍ଧାର ପୁଣି ନିର୍ଜନ, ତା ଉପରେ କାପ୍ତାନ୍‌ର ମୃତଦେହ ପଡ଼ି-ରହିଛି । ଭୟରେ ମୋ ଗୁଣ୍ଡ ଧଡ଼ ଧଡ଼ ହେବାକୁ ଲାଗିଲା । ମାଆ ଅତି ଶୀଘ୍ର ଗୋଟିଏ ମହମବତି ଜଳାଇ ଆଣିଲେ । କାପ୍ତାନ୍ ଠିକ୍ ସେହି ପୂର୍ବ ଅବସ୍ଥାରେ ଆଖି ତରାଟି ଚିତ୍ ହୋଇ ପଡ଼ିରହିଥାଏ । ମାଆ ଫୁସ୍ ଫୁସ୍ କରି ମୋ କାନ ପାଖରେ କହିଲେ, "ଜିମ୍ ଝରକା ସବୁ ଭଲଭାବରେ ବନ୍ଦ କରି ଦେ, ଯେପରି ବାହାରୁ କେହି ଦେଖି ପାରିବେନାହିଁ । ବର୍ତ୍ତମାନ ଗୃହଟାକୁ ଖୋଜି ବାହାର କରିବାକୁ ପଡ଼ିବ ।"

## ଆଶ୍ଚର୍ଯ୍ୟ ସିନ୍ଦୁକ

ପ୍ରଥମେ ମୁଁ ଆଣ୍ଠୁମାଡ଼ି ବସି କାପ୍ତାନ୍ ହାତରୁ କାଗଜ ଖଣ୍ଡ ଟାଣିଆଣି ଦେଖେତ ତାର ଗୋଟାଏ ପଟ ସାଦା ଏବଂ ଅନ୍ୟ ପଟଟା କଳା । ଏହି ସାଦା କାଗଜରେ ପରିଷ୍କାର ଅକ୍ଷରରେ ଲେଖାଥିଲା ଆଜି

ସିଡ ଦଶଟାରେ...... । କାଗଜଟାକୁ ଫିଙ୍ଗିଦେଇ ଗୋଟି ଗୋଟି କରି ସବୁ ପକେଟ ଦରଣ୍ଡି ପକାଇଲି । ମାତ୍ର ଗୁବଟା ମିଳିଲା ନାହିଁ । ପକେଟ ଭିତରୁ କେବଳ କେତୋଟି ମୁଦ୍ରା ଥିଲା, ଅଳ୍ପ କିଛି ସୂତା, ବଡ଼ ବଡ଼ ଛୁଞ୍ଚି କେଉଁଟା, ଗୋଟିଏ ଗ୍ଲେଟ କମ୍ପାସ ଓ ଗୋଟଏ ଡ଼ବା ବାହାରିଲା । ଗୁବ ନ ପାଇ ମୁଁ ହତାଶ ହୋଇ ପଡ଼ିଲି । ମାଆ କହିଲେ, "ବେକ ଗୁରିପଟେ ହାତ ବୁଲାଇ ଦେଖେ ତ, ହୁଏ ତ ସେଠାରେ ଥାଇ-ପାରେ ।"

ମଲା ମଣିଷର ବେକରେ ହାତ ଦେବାକୁ ଯାଇ ଦେହଟା ମୋର ଉପୁରେ ଶିରି ଶିରି ହୋଇ ଉଠିଲା; କିନ୍ତୁ କଣ ଆଉ କରିବ ? ଗୁବଟା ତ ବାହାର କରିବା ନିହାତି ଦରକାର । ବେକ ପାଖ ସାର୍ଟଟାକୁ ଛିଣ୍ଡାଇ ଦେବା ସଙ୍ଗେ ସଙ୍ଗେ ଗୁବଟା ବାହାରି ପଡ଼ିଲା । ଗୋଟାଏ ଶକ୍ତ ମୋଟା ସୂତାରେ ତାହା ବନ୍ଧାହୋଇ ଝୁଲୁଥିଲା । ଗୁବଟାକୁ ଧରି କାଳ ବିଳମ୍ବ ନକରି ସିନ୍ଦୁକ ଖୋଲିବାକୁ ଉପରକୁ ଧାଇଁଲି । ସିନ୍ଦୁକଟି ସାଧାରଣ ସିନ୍ଦୁକ ପରି; ମାତ୍ର ବିଭିନ୍ନ ଦେଶର ଛାପା ତା ଉପରେ ମରାଯାଇଛି । ବହୁଦିନର ପୁରୁଣା ସିନ୍ଦୁକ । କେତେ ଦେଶ ବିଦେଶ ବୁଲିଲାଣି; ତେଣୁ ସିନ୍ଦୁକର କୋଣଗୁଡ଼ାକ ଟିକେ ଟିକେ ଭାଙ୍ଗିଗଲାଣି ।

ତାଲାଟା କେଡ଼େ ଶକ୍ତ, ବାପରେ ବାପ । କିନ୍ତୁ ମାଆ ଖୁବ୍ ଜୋରରେ ଗୁପିଧରି ଟାଣି ଖୋଲିଦେଲେ । ଧୂଆଁପତ୍ରର କଡ଼ା ଗନ୍ଧରେ ଘର ଦୂଷିତ ହୋଇଗଲା । ଉପରେ ଗୋଟାଏ ଇସ୍ତ୍ରୀକରା ଭଲ ପୋଷାକ, ବୋଧହୁଏ କେବେ ହେଲେ ବ୍ୟବହୃତ ହୋଇନାହିଁ । ପୋଷାକର ତଳେ ନାନା ରକମର ଜିନିଷ, ଧୂଆଁପତ୍ରର ଡବା, ଦୁଇଟା ସୁନ୍ଦର ପିସ୍ତଲ, ଖଣ୍ଡେ ରୁପା, ଗୋଟିଏ ସ୍ପେନ ଦେଶୀୟ ଘଡ଼ି, କେତୋଟି ଗହଣା, ଦୁଇଟା କମ୍ପାସ ଓ ଅଦ୍ଭୁତ ପ୍ରକାରର କେତେଗୁଡ଼ାଏ ଶାମୁକା । ସବୁ ଜିନିଷର ତଳେ ଜାହାଜରେ ପିନ୍ଧିବାର ବଡ଼ ଢ଼ିଲା ବ୍ଲୋକ ଥିଲା । ମାଆ ବ୍ୟସ୍ତ ହୋଇ ସେଇଟାକୁ ଟାଣି ଆଣିବା ସଙ୍ଗେ ସଙ୍ଗେ ଆହୁରି କେତେ ପଦାର୍ଥ ଦେଖା-ଗଲା । ଗୋଟିଏ କାଗଜର ବଣ୍ଡିଲ, ଆଉ ଗୋଟିଏ କ୍ୟାନଭାସର ବ୍ୟାଗ

ଏକଜ ଗୋଟିଏ ରବର କନାରେ ଗୁଡ଼ା ହୋଇଥିଲା । ବ୍ୟାଗରେ ହାତ ଦେଇ ହଲାଇ ଦେବାରୁ ମୋହର ଝଣଝଣ ଶୁଣାଗଲା ।

ମୋର ମାଆ ଗର୍ବ କରି କହିଲେ, "ଏହି ବଦମାସ ଭଣ୍ଡଲୋକ ମାନଙ୍କୁ ଆଜ ଦେଖାଇ ଦେଉଛି ମୋର ସାହସ କେତେ । ଆମର ପ୍ରାପ୍ୟ ଟଙ୍କାରୁ କାଣି କଉଡ଼ିଟିଏ ମଧ୍ୟ ମୁଁ କଦାପି ଅଧିକା ନେବନାହିଁ । ଜିମ୍ ଟିକଏ ବ୍ୟାଗଟାକୁ ଖୋଲି ଧରି ତ ।" ଏହା କହି ସେ ଗୋଟି ଗୋଟି କରି ଗଣି କାପ୍ତାନ୍ ବ୍ୟାଗରୁ ମୋ ବ୍ୟାଗରେ ଟଙ୍କା ଭରି ଦେବାକୁ ଲାଗିଲେ । ଏହି କାମରେ ବହୁତ ବେଳ ବିତିଗଲା । ଟଙ୍କା ଗଣା ସରିଲାନାହିଁ । ନାନା ଦେଶର ନାନା ପ୍ରକାରର ମୁଦ୍ରା କାପ୍ତାନ୍‌ର ବ୍ୟାଗରେ ମିଶାମିଶି ହୋଇ ରହିଥିଲା । ଗିନିର ସଂଖ୍ୟା ସବୁଠାରୁ କମ । ମାଆ ଗିନିଗୁଡ଼ିକ ଖୋଜି ବାହାର କରି ମତେ ଦେଉଥିଲେ ।

ଆମର ପାଉଣାର ଅଧେ ଟଙ୍କା ଗଣା ହୋଇଛି, ଏପରି ସମୟରେ ଅନେକ ଦୂରରୁ ଗୋଟାଏ ଶବ୍ଦ ଶୁଣାଗଲା । ମୁଁ ମାଆଙ୍କ ହାତ ଧରି ପକାଇ କହି ଉଠିଲି, "ରହ, ରହ, ଟଙ୍କା ଗଣା ଥାଉ । କଣ ଗୋଟାଏ ଶବ୍ଦ ଶୁଣାଯାଉଛି ।"

କାନଡେରି ଶୁଣେ ତ ସେହି ପୁରୁଣା ଶବ୍ଦ । ଠକ୍ ଠକ୍ ଠୁକ୍ ଠୁକ୍ ଏ ତ ସେହି ଅନ୍ଧର ଲାଠି ଶବ୍ଦ । କ୍ରମେ ନିକଟତର ହେଉଛି । ଭୟରେ ଆମ୍ଭ ପ୍ରାଣ ବାହାରିଯିବା ଉପରେ । ନିଃଶ୍ୱାସ ବନ୍ଦକରି ବସି ରହିଲୁ । ଅନ୍ଧ ବାଡ଼ି ଠକ୍ ଠକ୍ କରି ଖୁବ ଜୋରରେ କବାଟରେ ଆଘାତ କଲା । କବାଟର ଶିକୁଳି ଘନ ଘନ ହଲିଇବାକୁ ଲଗିଲା । ଆମ୍ଭେ ଭାବିଲୁ ଏଥର କବାଟ ଭାଙ୍ଗି ଘରେ ପଶିବ ।

ଏହି ସମୟରେ ପୁଣି ଲାଠିର ଠକ୍ ଠକ୍ ଶବ୍ଦ ଶୁଣାଗଲା । ଏହା ଫେରି ଯିବାର ଶବ୍ଦ । ଅନ୍ଧ ଫେରିଯାଉଛି । ତାର ଲାଠିର ଶବ୍ଦ ଧୀରେ-ଧୀରେ ପବନରେ ମିଳାଇଗଲା । ଆମ୍ଭେ ନିଶ୍ୱାସ ମାରି ବସିଗଲୁ । ମୁଁ କହିଲି 'ମାଆ ଏଥର କାପ୍ତାନ୍‌ର ଥଳିଟିକୁ ନେଇ ଚାଲି ପଳାଇବା । ନହେଲେ ବିପଦ ଘଟିବ । କବାଟର କାଠ ସେତେ ଶକ୍ତ ନୁହେଁ ।"

ମାଆଙ୍କୁ ଯେ ମୋଠାରୁ କମ ଭଲ ଲାଗୁଥିଲା ତା ନୁହେଁ ; ମାତ୍ର ସେ ଜିଦ୍ ଧରି ବସିଲେ, ଯାହା ପାଉଣା ଅଛି ନେଇ କରି ଯିବ । ଗୋଟିଏ ପଇସା ବେଶି କମ୍ବା କମ୍ ନେଇପାରିବ ନାହିଁ । ଆଚ୍ଛା ମୁସ୍କିଲ, ବିପଦରେ ପଡ଼ି କିଛି ବେଶି ନେଇଗଲେ କି ଦୋଷଟା ବା ହୋଇଯିବ । ମାଆ କହିଲେ, 'ତାହା ହେବନାହିଁ ।'

ମୁଁ କହିଲି "ତାହେଲେ ପାଉଣାରୁ କମ୍ ନେଲେ ତ ଅନ୍ୟାୟ ହେବ ନାହିଁ । ତେବେ ଚାଲ ପଳାଇବା ।" ତଥାପି ମାଆ ନାରାଜ । ଉଚିତ ଟଙ୍କା ସାଙ୍ଗରେ ନେବ ତ ଯିବ । ସେଇ ଏକା ଜିଦ୍ ।

ଠିକ୍ ଏଇ ସମୟରେ ଦୂରରୁ ବଂଶୀ ଧ୍ୱନି ଶୁଣାଗଲା । ମାଆ ଚମ୍କି ଉଠିପଡ଼ି କହିଲେ, "ସବୁ ପାଉଣା ପୂରା ହେଲନାହିଁ । କମ୍ ନେଇଯିବାକୁ ପଡିବ । ଯାହାହେଉ ଅଧିକ ତ ନେଇନାହିଁ ।"

ମାଆ ବ୍ୟାଗଟିକୁ ଧରିଲେ । ମୁଁ ଅଏଲକ୍ଲଥଗୁଡ଼ା ପୁଟୁଳିଟି ଧରି ତଳକୁ ଆସି ଦ୍ୱାର ଖୋଲିଦେଲି । ଥରେ ଏଣେତେଣେ ଘୂରିଆଡ଼େ ଆଖି-ପକାଇ ଦେଇ ପ୍ରାଣପଣେ ଦୌଡ଼ିବାକୁ ଲାଗିଲୁ ! କିଛି ଦୂର ଯିବାପରେ ମଣିଷର ପାଦଶବ୍ଦ ଶୁଣାଗଲା । ପଛକୁ ଚାହିଁ ଦେଖେ ତ ଜଣେଲୋକ ଲଣ୍ଠନ ଧରି ଆସୁଅଛି । ତା ସାଙ୍ଗରେ ସାତଆଠ ଗୋଟିଏ ଦଳ ଆସୁଛନ୍ତି । ଥରିଥରି ମାଆ ମୋତେ କହିଲେ ବାପ ଧନ, ଥଳିଟା ଧରି ଦୌଡ଼ି ପଳାଇଯାଆ, ମୁଁ ଆଉ ପାରୁନାହିଁ । ଦେହଟା ବୁଡ଼ିଗଲା ପରି ଲାଗୁଛି । ଭାଗ୍ୟଟା ବଡ଼ ଖରାପ । ଏମାନଙ୍କ ହାତରେ ଜୀବନ ଯିବା ବିଚିତ୍ର ନୁହେଁ ।"

ମୁଁ ମନେ ମନେ ଗାଁର ଲୋକମାନଙ୍କୁ ବହୁତ ଗାଳିଦେଲି—ଭୀରୁ କାପୁରୁଷ ଗୁଡ଼ାକ । ମାଆଙ୍କ ଉପରେ ମଧ୍ୟ କମ୍ ବିରକ୍ତ ହୋଇନାହିଁ—ତାଙ୍କର ସାଧୁତା ଲାଗି । ସିନ୍ଦୁକ ଫିଟାଇ ଯାହାପାଇଥିଲେ ଧରି ପଳାଇ ଆସିଥିଲେ ହୋଇଥାନ୍ତା, ଅକାରଣରେ ଏତେ ବିଳମ୍ବ ହେଲା ସିନା ?

ଶତ୍ରୁଦଳଙ୍କ ହାତରୁ ରକ୍ଷା ପାଇବାଲାଗି ମାଆଙ୍କସହ ମୁଁ ପାଖରେ ଥିବା ଗୋଟିଏ ନଦୀଘାଟ ବୁଦା ଉହାଡରେ ଲୁଚିଗଲି । ବେନବୋ-

ଠାରୁ ତାହା ବେଶିଦୂର ନୁହେଁ । ସେଠାରେ ଯେ ଯାହା କଥାବାର୍ତ୍ତା ହେବ; ଟିକଏ କାନ ଦେଲେ ତାହା ନଷ୍ଟସ୍ପ ଶୁଣାଯିବ ।

## ଜଳଦସ୍ୟୁଙ୍କ ଆକ୍ରମଣ

ଦୁର୍ବୃତ୍ତଦଳ ହୋଟେଲ ଆଡ଼କୁ ଧାଇଁ ଧାଇଁ ଆସୁଥାଆନ୍ତି । ପ୍ରାୟ ଆଠ ନଅଜଣ ପର୍ଯ୍ୟନ୍ତହେବେ ।

ସମସ୍ତଙ୍କ ଆଗରେ ଜଣେଲୋକ ଲଣ୍ଠନଧରି ଆସୁଥାଏ । ସେମାନେ ନିକଟକୁ ଆସିଲାକ୍ଷଣି ଦେଖାଗଲା ଯେ ତିନିଜଣ ହାତ ଧରାଧରିହୋଇ ଧାଉଁଛନ୍ତି । ସ୍ୱର ଶୁଣି ଜାଣି ପାରିଲି, ମଝିରେଥିବା ଲୋକଟି ସେହି ଅନ୍ଧ ନାବିକ ।

ସେମାନେ ବେନବୋ ପାଖରେ ପହଞ୍ଚିଲାକ୍ଷଣି ଅନ୍ଧ ଲୋକଟା ଚିତ୍କାରକରି କହିଲା, „ଅତି "ଶୀଘ୍ର କବାଟକୁ ଭାଙ୍ଗି ଦିଅ ।" ଆଚ୍ଛା ବେଶ୍, ବେଶ୍, କହି ଦରଜା ନିକଟକୁ କେତେଜଣ ଦଉଡ଼ିଗଲେ । ତାହାପରେ ଚମକିପଡ଼ି ଠିଆ ହୋଇପଡ଼ିଲେ । ବୋଧହୁଏ ଦେଖିଲେ କବାଟ ମେଲା । ତାହାହିଁ ସେମାନଙ୍କୁ ଆଶ୍ଚର୍ଯ୍ୟ ବୋଧହେଲା । ସେମାନେ ନିଜ ନିଜ ଭିତରେ କଣ ଜୁହାଜୁହି ହେଲେ । ଅନ୍ଧ ଭୟାନକ ରଗିଯାଇ ଗର୍ଜନକରି କହିଲା, 'ଆସିବାରେ ଡେରି କରି କ ସର୍ବନାଶ ନ କଲ ? ଯାହାହେଉ—ଏବେ ମଧ୍ୟ କହୁଛି; ଯଦି କପାଳରେ ଥାଏ, ଶୀଘ୍ର ଭିତରକୁ ଯାଅ ।'

ସଙ୍ଗେ ସଙ୍ଗେ ଚାରି ପାଞ୍ଚ ଜଣ ଭିତରକୁ ପଶିଗଲେ । ଆଉ ଦୁଇ ଜଣ ଅନ୍ଧ ସାଥିରେ ବାହାରେ ଠିଆ ହୋଇ ରହିଲେ । ଭିତରକୁ ଯାଇ-ଥିବା ଲୋକଙ୍କ ପାଟି ମୋତେ ଶୁଣାଗଲା—"ବିଲ୍ ମରିଯାଇଛି ।"

ଏତେ ଡେରି କରି ଆସିଥିବା ହେତୁ ଅନ୍ଧ ସେମାନଙ୍କୁ ପୁଣି ଗାଳି ଦେଇ କହିଲା, "ଜଣେ ଦୁଇଜଣ ତାର ଲୁଗାପଟା ଖୋଜ ନିଅ । ଅନ୍ୟ-ମାନେ ଶୀଘ୍ର ଉପରକୁ ଯାଅ; ସିନ୍ଦୁକଟିକୁ ନେଇଆସ ।"

ତାହା ପରେ ଦପ୍ ଦପ୍ ଶବ୍ଦ ଶୁଣାଗଲା । ବୋଧହୁଏ ସେମାନେ ସିଡ଼ିବାଟେ ଉପରକୁ ଗଲେ । ପହଞ୍ଚିବା ସଙ୍ଗେ ସଙ୍ଗେ ଉପରୁ ଚିତ୍କାର ଶୁଣାଗଲା । କାପ୍ତାନ୍ ଘରର ଦରଜା ଜୋରରେ ଖୋଲି ଜଣେ ଲୋ ମୁଣ୍ଡ ଗଳାଇ ଅନ୍ଧକୁ ଡ଼ାକି କହିଲା, 'ଏପିଉ, କିଏ ସିନ୍ଦୂକଟା ଖୋଲି-ଦେଇଛି ରେ ।" ତାହା ଶୁଣି ପିଉ ଗର୍ଜନ କରି ଉଠିଲା, "ସେଇଟା ଅଛି ତ ?"

"ହଁ—ଟଙ୍କା ଠିକ୍ ଅଛି ।" "ତୁମ ଟଙ୍କା ମୁହଁରେ ନିଆଁ ପଡ଼ୁ, ମୁଁ କହୁଛି ଫ୍ଲିଣ୍ଟର ଚିଠି କଥା ।"

"ନାଁ କାହିଁ ସିନ୍ଦୂକ ଭିତରେ ତ ଦେଖାଯାଉ ନାହିଁ ।"

ଅନ୍ଧ ପୁଣି ତୀବ୍ର ଚିତ୍କାର କରି ଉଠିଲା, 'ତଳେ କିଏ ସବୁ ଅଛ ? -ବିଲ୍ ପାଖରେ ଥାଇପାରେ । ଶୀଘ୍ର ଖୋଜି ବାହାର କର ।"

ତାହା ପରେ ବହୁତ ସମସ୍ତ ଚୂପ୍ ଚୂପ୍, କେବଳ ଯାହା ଜିନିଷ ଫୋପଡ଼ାର ଶବ୍ଦ ଶୁଣାଯାଉଥାଏ ।

ବିଲ୍‌ର ସର୍ବାଙ୍ଗ ବସ୍ତ୍ର ସମସ୍ତ ଧରି ଏପଟ ସେପଟ ଖୋଜି ନେବା ପରେ ଯେତେବେଳେ ଚିଠିର ପତ୍ତା ମିଳିଲାନାହିଁ, ସେତେବେଳେ ଅନ୍ଧ ପିଉ କହିଲା, "ସରାଇ ଖାନାର ଲୋକମାନଙ୍କଦ୍ୱାରା ଏଇ କାଣ୍ଡ ହୋଇଛି । ସେଇ ଟୋକାର ଏଇ କାମ । ଆଉ କେହି ନୁହେଁ । ଯଦି ତାର ଆଖି ଦୁଇଟା ତାଡ଼ି ଫିଙ୍ଗି ଦେଇପାରନ୍ତି; ତେବେ ମୋ ମନ ଅରମାନ ମେଣ୍ଟନ୍ତା । ଟିକିଏ ଆଗରୁ ଯେ ସେମାନେ ଏଠାରେ ଥିଲେ, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ । ସେମାନେ ଭିତରୁ କବାଟ ବନ୍ଦ କରିଥିଲେ । ମୁଁ ଆସି ଖୋଲିବାକୁ କେତେ ଚେଷ୍ଟାକଲି; ମାତ୍ର କୌଣସି ପ୍ରକାରେ ଖୋଲିପାରିଲି ନାହିଁ । ବର୍ତ୍ତମାନ ସେମାନଙ୍କୁ ଖୋଜିବାକୁ ତୁମ୍ଭେମାନେ ଚାରିପଟେ ଘେରାଉ କର । ସେମାନଙ୍କୁ ଯେ କୌଣସି ପ୍ରକାରେ ଧରିବାକୁ ହେବ । ଘରଟାକୁ ଧୂଳି ଚୂରମାର କରିଦିଅ ।

ଅନ୍ଧର ହୁକୁମ ଅନୁସାରେ ସେମାନେ ତଳ ଉପର ଚାରିଆଡ଼େ ଧାଁ ଧପଡ଼ କରି ଖୋଜିବାକୁ ଲାଗିଲେ । ଜିନିଷପତ୍ର ଫୋପଡ଼ା ଫିଙ୍ଗା

କରି ଭାଙ୍ଗି ପକାଇଲେ । କବାଟରେ ଦୁଲ୍ ଦାଲ୍ କରି ଗୋଇଠା ମାଇଲେ ତାହା ପରେ ସମସ୍ତେ ଜଣ ଜଣ ହୋଇ ବାହାରକୁ ଆସି କହିଲେ, "ସେମାନଙ୍କର ସନ୍ଧାନ ମିଳିଲାନାହିଁ । ସେମାନେ ପଳାଇଛନ୍ତି ।"

ସଙ୍ଗେ ସଙ୍ଗେ ପୁଣି ସେହି ବଂଶୀ ନାଦ ଯାହା ଶୁଣି ମା ଓ ମୁଁ ଉପରେ ଚାଲିଆସିଥିଲୁ । ପଳାଇ ଆସିବାବେଳେ ମୁଁ ଭାବିଥିଲି ବୋଧହୁଏ ଅନ୍ୟ ତା ଲୋକମାନଙ୍କୁ ଏକତ୍ର କରିବା ପାଇଁ ଏ ବଂଶୀ ବଜାଉ-ଥିଲା; କିନ୍ତୁ ବର୍ତ୍ତମାନ ଜାଣିପାରିଲି ଯେ ଏ ବଂଶୀ ଅନ୍ଧର ନୁହେଁ, ସେ ବଜାଇ ନାହିଁ । ସେମାନଙ୍କ ଦଳର କେହି ବିପଦ ଜାଣି ସାବଧାନ କରିବାକୁ ଏ ବଂଶୀ ବଜାଉଛି । ଦୁଇଥର ବଂଶୀ ବାଜି ଉଠିଲା । ତା ଶୁଣି ଜଣେ କହି ଉଠିଲା, "ହେଇଟି, ପୁଣି ଡାର୍କର ବଂଶୀ ଶବ୍ଦ ଶୁଣା ଯାଉଛି, ଦୁଇଥର ବାଜିଲାଣି । ଏଥର ଦେଖୁଛି ପଳାଇଯିବା ନିତାନ୍ତ ଆବଶ୍ୟକ ।

"ଏକଥା ଶୁଣି ଅନ୍ଧ ପିଉ ରାଗିଯାଇ କହିଲା, 'କଣ ସମସ୍ତେ ଚମ୍ପଟ କରିବ ? ଛିନ୍ତୁ, କାପୁରୁଷ । ଡାର୍କ ଗୋଟାଏ କପଟ ବୋକା । ତାର ଭଲେ ହେଲେ ସାହସ ନାହିଁ—ଏକଥା ଆମ୍ଭେ ପ୍ରଥମରୁ ଜାଣିଛୁ । ତା ବଂଶୀର କିଛି ଅର୍ଥ ନାହିଁ । ଏମାନେ ନିକଟରେ ଅଛନ୍ତି । ଏତେ ଅଳ୍ପ ସମୟ ଭିତରେ ସେ ଟୋକା କାଦାପି ଦୂରକୁ ଯାଇପାରି ନ ଥିବ । ବର୍ତ୍ତମାନ ମଧ୍ୟ କହୁଛି, ଖୋଜ । ଖୋଜ । କାପୁରୁଷମାନେ ଘରଆଡ଼େ ଦେଖାଉ କର । ମୁଁ ଆଉ ସ୍ଥିର ହୋଇ ରହିପାରୁ ନାହିଁରେ—ହାୟ, ହାୟ—ମୁଁ ଯେ ଅନ୍ଧ, କିଛି ଦେଖି ପାରୁ ନାହିଁ । ଆଖି ଦୁଇଟା ଥିଲେ ସେମାନଙ୍କର ମଜା ନିକାଲି ଦେଇଥାନ୍ତି ।

ଅନ୍ଧ ପିଉର ତିରସ୍କାର ଶୁଣି ଜଣେ ଦୁଇଜଣ ଏଣେ ତେଣେ ଖୋଜିଲାକୁ ଲାଗିଲେ ସିନା । ହେଲେ ସେମାନଙ୍କର ଗୋଟିଏ ଆଖି ଖୋଜିବାରେ ରହିଥିଲା ଅନ୍ୟ ଆଖି ରହିଲା ବିପଦ ଆଡ଼େ । ସମସ୍ତେ ରାସ୍ତା ମଝିରେ ଯେ ଯେଉଁଠି ଥିଲେ ଠିଆହୋଇ ରହିଲେ; ଭଲେ ହେଲେ ଅଗ୍ରସର ହେଲେନାହିଁ ।

ପିଉ ପୁଣି ଗର୍ଜିଯାଇ ତିରସ୍କାର କରିବାକୁ ଲାଗିଲା, 'ଧିକ୍ ଧିକ୍ ତୁମେ, ଘୃଣ୍ଣ କାପୁରୁଷ ଦଳ; ଯଦି ମିଛର ଗର୍ବ ଚାଅ, ତେବେ ଆଉ ଶତ୍ରୁ କଣ ? ଏକା ଥରକେ ଲକ୍ଷପତି ହୋଇଯିବ । ତୁମ୍ଭେ ଜାଣ ଯେ, ଜନଷଟି ଏଇଠି ଅଛି; ଅଥଚ ତୁମ୍ଭେ ଅଳସୁଆପରି ଠିଆହୋଇ ରହିଛ ? ଖୋଜିବାକୁ ଟିକେ ହେଲେ ଚେଷ୍ଟା କରୁନାହିଁ ? ତୁମର ଏ ଢଙ୍ଗ ଦେଖି ମତେ ଆଶ୍ଚର୍ଯ୍ୟ ଲାଗୁଛି । କାହାର ସାହସ ହେଉନାହିଁ ବାଲ୍ ଆଡ଼କୁ ଯିବାକୁ । ଶେଷକୁ ଅନ୍ଧ ହୋଇ ମଧ ମୋତେ ଯିବାକୁ ହେଲା । ଧିକ୍ ତୁମମାନଙ୍କ ଜୀବନ; ପୋକ ମାଛିଠାରୁ ତୁମେ ହୀନ । ତା ହୋଇ ନ ଥିଲେ ସେମାନଙ୍କୁ ଧରିପାରି ନ ଥାଆନ୍ତ ? ସବୁ ମିଳିଥାଆନ୍ତା ।

ଏହା କହି ସେ ମନ ଇଚ୍ଛା ବାଡ଼ିଟାକୁ ଘୂରାଇ ସମସ୍ତଙ୍କୁ ପିଟିବାକୁ ଆରମ୍ଭ କରିଦେଲା । ସମସ୍ତେ ସଙ୍ଗେ ସଙ୍ଗେ ଏକଜୁଟ ହୋଇଗଲେ । ପିଉକୁ ଧମକ ଦେଲେ ଓ ତାକୁ ଶାସନ କରିବା ନିମନ୍ତେ ତା ହାତରୁ ବାଡ଼ି ଛଡାଇ ନେବାକୁ ପ୍ରାଣପଣ ଚେଷ୍ଟାକଲେ, କିନ୍ତୁ ପାରିଲେ ନାହିଁ ।

ପିଉ ସହିତ ତା ଦଳର ଏହି ଯେଉଁ ବିବାଦଟି ଲାଗିଲା, ସେଥିରେ ଆମ୍ଭେ ରକ୍ଷାପାଇଗଲୁ । ଏମାନଙ୍କ ବିବାଦ ଲାଗିଛି; ଏତିକିବେଳେ ଗ୍ରାମର ପାର୍ଶ୍ୱବର୍ତ୍ତୀ ପାହାଡ଼ ଉପରୁ ଘୋଡ଼ାର ଟାପୁଶବ୍ଦ ଶୁଣାଗଲା । ପ୍ରାୟ ସେହି ମୁହୂର୍ତ୍ତରେ ଲଟା ପାହାଡ଼ରୁ ପିସ୍ତଲର ଶବ୍ଦ ପୁଣାଗଲା ।

ସେହି ବଂଶୀ ଶବ୍ଦ ଯେ ଏମାନଙ୍କୁ ଏତେଦୂର ଭୀତତ୍ରସ୍ତ କରି-ପକାଇବ, ତାହା ମୁଁ କଳ୍ପନା କରିନଥିଲି । ଶବ୍ଦ ଶୁଣିବା ସଙ୍ଗେ ସଙ୍ଗେ ଦସ୍ୟୁମାନେ ଯେ ଯୁଆଡ଼େ ପାରନ୍ତି ଛିନ୍ନଛତ୍ର ହୋଇ ଦୌଡ଼ିବାକୁ ଲାଗିଲେ । କିଏ ସମୁଦ୍ର ଆଡ଼କୁ ଧାଇଁଲା ତ କିଏ ପାହାଡ଼ଆଡ଼କୁ ଚାଲିଗଲା । ଆଖି ପିଛୁଳାକେ କିଏ କୁଆଡ଼େ ଅଦୃଶ୍ୟ ହୋଇଗଲେ । କେବଳ ବରିବ ଅନ୍ଧ ପିଉ ଚାଲି ଯାଇ ପାରିଲାନାହିଁ । ହୁଏତ ଭୟରେ କିମ୍ବା ତା ଉପରେ ରାଗକରି ଦସ୍ୟୁମାନେ ତାକୁ ଏକୁଟିଆ ଛାଡ଼ିଦେଇ ଚାଲିଗଲେ । ପିଉ ଆଉ କଣ କରିବ ? ଭୟରେ ପାଗଳ ପରି ହୋଇ ପାହାଡ଼ ରାସ୍ତାରେ

ଉପରକୁ ଚଢ଼ିଲି ଓ ତଳକୁ ଓହ୍ଲାଇଲା । ଏହାପରେ କିଛି ସମୟ ତଳ ଉପର ହେଲା । ଗୋଟାଏ ବାଟରେ ଆଗେଇ ଆସି ଝର୍ଣ୍ଣ ତଳେ ପଡ଼ିଗଲା, ଚିତ୍କାର କଲା -- ବ୍ଲାକ୍‌ଡଗ ଜନ, ମାର୍କୀ ବନ୍ଧୁଗଣ ତୁମ୍ଭେ-ମାନେ ନିଶ୍ଚୟ ଏହି ବୁଢ଼ାଟାକୁ ଏକୁଟିଆ ଛାଡ଼ିଦେଇ ପଳାଇବ ନାହିଁ । ହାତ ଧରି ନେଇଯାଅ ।"

ସେହି ସମୟରେ ଘୋଡ଼ାର ଟାପୁ ଶବ୍ଦ ଶୁଣାଗଲା । ପ୍ରାୟ ଗୁରି ପାଞ୍ଚଜଣ ଅଶ୍ୱାରୋହୀ ଜହ୍ନ ଆଲୁଅରେ ଛୁଟି ଆସି ତା ଆଗରେ ପହଞ୍ଚିଲେ ।

ପିଉ ତାର ଭୁଲ ବୁଝିପାରିଲା । ସେ ଯାହାଙ୍କୁ ବନ୍ଧୁ ଭାବୁଥିଲା, ଅସଲରେ, ଏମାନେ ତାର ଶତ୍ରୁ । ସେ ଓର ଉଣ୍ଡି ଦୌଡ଼ିଯିବାକୁ ଚେଷ୍ଟା କଲା । ଗୋଡ଼ ଖସିଯିବାରୁ ପୁଣି ତଳେ ପଡ଼ି ଗଡ଼ ଗଡ଼ ଯାଇ ଘୋଡ଼ା ପାଦତଳେ ଅଟକିଲା । ଅଶ୍ୱାରୋହୀ ତାଙ୍କୁ ରକ୍ଷା କରିବାକୁ ଚେଷ୍ଟାକଲେ । କିନ୍ତୁ କିଛି ଫଳ ହେଲା ନାହିଁ । ବରଂ ପିଉର ଚିତ୍କାର ନିର୍ଜନ ରାତିରେ ଭୀଷଣ ଶୁଣାଗଲା । ଘୋଡ଼ା ତାର ଗୁରିଗୋଡ଼ର ଖୁରାରେ ତାକୁ ମାଡ଼ି ଦଳି ଆଗକୁ ଗଲା । କିଛି ସମୟ ଛଟ ପଟ ଓ ବିକଳ ଶବ୍ଦରେ ସବୁ ଶେଷ ହୋଇଗଲା ।

ଅଶ୍ୱାରୋହୀମାନେ ଆସି ଆମ ଆଗରେ ପହଞ୍ଚିଗଲେ । ଏହି ଅପ୍ରତ୍ୟାଶିତ ଦେଖା ଦୁର୍ଘଟଣାରେ ସେମାନେ ଟିକିଏ ବିବ୍ରତ ହୋଇ ପଡ଼ିଥିଲେ । ମୁଁ ସେମାନଙ୍କୁ ଚିହ୍ନିପାରିଲି । ଗ୍ରାମରୁ ଡାକ୍ତର ଲିଭେସୀଙ୍କ ନିକଟକୁ ଖବର ନେଇ ଯାଇଥିବା ପିଲାଟି ତାଙ୍କଭିତରେ ଥିଲା । ସଙ୍ଗରେ ଥିବା ଅବଶିଷ୍ଟ ଅଶ୍ୱାରୋହୀମାନେ ସରକାରୀ କର୍ମଚାରୀ । ସେ ପିଲାଟି ସେମାନଙ୍କ ସହିତ ଆସି ସୁପରଭାଇଜର ଡାନ୍‌ସକୁ ଭେଟିଛି । ସେମାନେ ସମସ୍ତେ ଆମଆଡ଼କୁ ଆସୁଥିଲେ । ସମସ୍ତେ ତ ଜଣାଶୁଣା ଲୋକ । ମା ଓ ମୁଁ ମୃତ୍ୟୁ ମୁଖରୁ ବର୍ତ୍ତିଗଲୁ ବୋଲି ମୁଁ ଭାବିଲି ।

ପିଉ ମରିଯାଇଛି । ଏଥି ର କୌଣସି ଭୁଲ ନାହିଁ । ମାଆଙ୍କୁ ଧରି ଆମେ ସମସ୍ତେ ଯାଇ ଗ୍ରାମରେ ପହଞ୍ଚିଲୁ । ମା' ଅତ୍ୟନ୍ତ ଉପୁଭୀତ

ହୋଇ ପଡ଼ିଥିଲେ; କିନ୍ତୁ ଆଖି ଓ ମୁହଁରେ ପାଣି ଛାଟିଦେବାରୁ ସେ ସୁସ୍ଥ ହୋଇ ଉଠି ବସିଲେ । ମାତ୍ର ସେ ସବୁ ପାଉଣ୍ଡ ଟଙ୍କା ଆଣିପାରିଲେ ନାହିଁ ବୋଲି ଦୁଃଖ କରୁଥିଲେ ।

ମାଆଙ୍କୁ ଗ୍ରାମରେ ପହଞ୍ଚାଇ ଦେଇ ମିଃ ଡାନ୍‌ସ ଆଡ଼ମିରାଲ ନେବାକୁ ଆସିଲେ । ମୁଁ ତାଙ୍କ ସଙ୍ଗେ ସଙ୍ଗେ ଥାଏଁ । ଯାଇ ଦେଖେତ ସେମାନେ ବେନବୋର କବାଟ ଝରକା ସବୁ ଭାଙ୍ଗି ଚୂନା କରି-ଦେଇଛନ୍ତି । ହୋଟେଲର କୌଣସି ଜିନିଷ ନେଇ ନାହାନ୍ତି, କେବଳ କାପ୍ତାନ୍‌ର ଟଙ୍କା ଥଳିଟି ଧରି ପଳାଇଛନ୍ତି ।

ମିଃ ଡାନ୍‌ସ କହିଲେ—ଦେଖ ଜିମ୍,—ସେମାନେ ତ ସବୁ ଟଙ୍କା ନେଇଯାଇଛନ୍ତି । ତେବେ ତୁମେ ପୁଣି କଣ କହୁଥିଲ ସେମାନେ ଆଉ କିଛି ଖୋଜୁଥିଲେ ବୋଲି ।

ମୁଁ କହିଲି—'ଆଜ୍ଞା' ଟଙ୍କା ତ ନେଇଛନ୍ତି; କିନ୍ତୁ ସେମାନେ ଯାହା ଖୋଜୁଥିଲେ ତାହା ମୋର ଗୁ'ପ୍ତ ପକେଟରେ ଅଛି । ମୁଁ ଏହାକୁ କାହା ଜିମା ଦେଇ ନିଶ୍ଚିନ୍ତ ହେବାକୁ ଚାହେଁ ।

"ବେଶତ୍ ଜିମ୍—ବେଶ୍ ମୋ ପାଖରେ ରଖିଦିଅ ନା—ମୁଁ ଖୁବ୍ ସାବଧାନତା ସହକାରେ ଲୁଚାଇ ରଖିଦେବି । କେହି ଜାଣିପାରିବେ ନାହିଁ ।"

ମୁଁ କହିଲି ମୋର ମନେହୁଏ ଡାଃ ଲିଭେସୀଙ୍କ ପାଖରେ ରଖିଲେ ।"

ମୋ ତୁଣ୍ଡରୁ କଥା ଶେଷ ନ ହେଉଣୁ ମିଃ ଡାନ୍‌ସ କହି ଉଠିଲେ "ହଁ —ହଁ—ଠିକ୍ ଲିଭେସୀଙ୍କ ପାଖରେ ରଖିବା ସବୁଠାରୁ ଭଲ । ସେ ଭଲଲୋକ ଏବଂ ମାଜିଷ୍ଟ୍ରେଟ । ମୁଁ ବର୍ତ୍ତମାନ ଲିଭେସୀଙ୍କ ନିକଟକୁ ଯାଇ ପିଉର ମୃତ୍ୟୁ ସମ୍ବାଦ ଦେବି । ପିଉ ଯେ କର୍ପର ମଲା ତାହା ତୁମ୍ଭେ ଜାଣ । ମୁଁ ଇଚ୍ଛା କରି ତାକୁ ମାରିନାହିଁ । ଦେଶର ଲୋକମାନେ ହୁଏତ ମୋ ବିରୁଦ୍ଧରେ ଲିଭେସୀଙ୍କ ଆଗରେ ନାନା କଥା

କହିବେ । ମୋର କେବଳ ସେହି ଭୟ ହେଉଛି । ଜିମ୍ ତୁମେ ଯଦି କିଛି ମନେ ନ କର ତେବେ ମୁଁ ତୁମକୁ ଲିଭେସୀଙ୍କ ନିକଟକୁ ନେଇଯିବି ।

ମୁଁ କହିଲି,—'ଭଲକଥା । ମୁଁ ବେଶ୍ ଖୁସିରେ ସେଠାକୁ ଯିବି—ସେଥିରେ ଆଉ କଥା କଣ ?

ଏହା କହି ମୁଁ ଡ଼ାନ୍‌ସେଙ୍କ ସହିତ ଗାଁକୁ ଯାଇ ମାଆଙ୍କୁ କହିଲି, ମାଆ—ମୁଁ ଏହାଙ୍କ ସଙ୍ଗେ ଡାଃ ଲିଭେସୀଙ୍କ ପାଖକୁ ଯାଉଛି ।

ଡାନ୍‌ସ କହିଲେ ଡ଼ଜାର—ତୁମ ଘୋଡ଼ାଟି ଖୁବ୍ ଭଲ । ତୁମେ ଘୋଡ଼ାରେ ଚଢ଼ି ଏଇ ପିଲାଟିକୁ ପଛରେ ବସାଇ ନିଅ । ତା ପରେ ଆମେ ଲିଭେସୀଙ୍କ ଘରକୁ ଯିବା ।

ଡ଼ଜାର ମୋତେ ଘୋଡ଼ା ପିଠିରେ ବସାଇ ଦେଲା । ଆମର ଘୋଡ଼ା ଛୁଟିବାକୁ ଲାଗିଲା ।

## ଅଭିନବ ମାନଚିତ୍ର

ଡାକ୍ତର ଲିଭେସିଙ୍କ ଘରେ ପହଞ୍ଚି ଶୁଣିଲି, ସେ ଘରେ ନାହାନ୍ତି । ଜମିଦାର ସ୍କୋୟାର ଟ୍ରିଲେମିଙ୍କ ଘରକୁ ଭୋଜି ଖାଇବାକୁ ଯାଇଛନ୍ତି; ସେହିଠାରେ ରାତି କଟାଇବେ ।

ଏହି ଖବର ପାଇ ଆମେ ଡାକ୍ତର ଲିଭେସିଙ୍କ ଘରୁ ଜମିଦାର ଘରକୁ ଗଲୁ । ସେଠାରେ ଡାକ୍ତର ଲିଭେସି ଓ ଜମିଦାର ସ୍କୋୟାର ଆମକୁ ସ୍ୱାଗତ ଜଣାଇଲେ । ଡାକ୍ତର ଲିଭେସି କହିଉଠିଲେ, "ମିଃ ଡାନ୍‌ସ ଜିମ୍, ଆସ ଆସ । ଭିତରକୁ ଆସ । ଆଉ ସବୁ 'ଖବର କଅଣ ?

ଘରଭିତରକୁ ଯିବା ମାତ୍ରକେ ଡାନ୍‌ସ ଗଡ଼ ଗଡ଼ କରି ସବୁ ଘଟଣା ବର୍ଣ୍ଣନା କରିଗଲେ । ତାହା ଶୁଣି ଜମିଦାର ସ୍କୋୟାର ଓ ଡାକ୍ତର ଲିଭେସି ଅବାକ୍ ହୋଇଗଲେ । ମାଆଙ୍କ ସାହସ ଓ ସାଧୁତାକୁ ଉଚ୍ଛ୍ୱସିତ ପ୍ରଶଂସା କଲେ ।

ମୁଁ ପୂର୍ବରୁ କେବେହେଲେ ସ୍କୋୟାରଙ୍କୁ ଏତେ ନିକଟରେ ଦେଖି ନଥିଲି । ସେ ପ୍ରାୟ ଛଅ ଫୁଟ ଉଚ୍ଚ । ସେହି ଅନୁପାତରେ ମୋଟା ପ୍ରଶସ୍ତ ।

ଲଲାଟ ରେଖାମୟ । ଗମ୍ଭୀର ରକ୍ତବର୍ଣ୍ଣ ମୁଖ । ଗାଢ଼ କଳା ଭ୍ରୂଲତା ସର୍ବଦା ଘୂରୁଥାଏ । ଏକ ପ୍ରକାର ବଳିଷ୍ଠ ଗୃହିଣୀ ସବୁସମୟରେ ତାଙ୍କ ଆଖିରେ ଲଗି ରହିଥାଏ ।

ସେମାନେ ଯେତେବେଳେ ମାଆ ସହିତ ଖାନାକୁ ଫେରିଯିବା କଥା ଶୁଣିଲେ, ସେତେବେଳେ ଡାଃ ଲିଭେସି ଆନନ୍ଦରେ କରତାଳି ଦେବାକୁ ଲଗିଲେ ।

ସ୍କୋୟାର କହିଉଠିଲେ—ସାବାସ୍-ଧନ୍ୟ ସାହସ, ଏଇ ତ ଦରକାର । ନ୍ୟାୟ ପ୍ରତି ଏଭଳି ମୋହ ନଥିଲେ କଅଣ ଏପରି ସାହସ ହୁଅନ୍ତା ?

ମିଃ ଡାନ୍‌ସ ଏହିପରି ଭାବରେ ତାଙ୍କର କଥା ଶେଷକଲେ । ତତ୍ପରେ ଲିଭେସି ମୋ ଆଡ଼କୁ ଚାହିଁ କହିଲେ "ଅସଲ୍ ଜିନିଷଟା ପରା ତୁମ ନିକଟରେ ଅଛି—ତେବେ ଆଉ କଅଣ—ଏଇଟାକୁ ସେମାନେ ଖୋଜୁଥିଲେ ନା ?"

ହୋଇଥିବ 'ଏଇ ନିଅନ୍ତୁ ଆଜ୍ଞା" କହି ମୁଁ ଅଏଲ୍‌କ୍ଲଥ ଗୁଡ଼ା କାଗଜ ବଡ଼ାଟା ବାହାର କରି ଡାଃ ଲିଭେସିଙ୍କ ହାତକୁ ବଢ଼ାଇଦେଲି । ସେ ତାକୁ ବୁଲେଇ ବୁଲେଇ ଚାରିଆଡ଼େ ଦେଖି କୋଟ ପକେଟରେ ରଖିଦେଲେ । ତାହା ପରେ ସ୍କୋୟାରଙ୍କୁ ଚାହିଁ କହିଲେ, "ତୁମେ ଅନୁମତି ଦେଲେ ଜିମ୍‌କୁ ମୋ ଘରେ ଶୋଇବାକୁ କହିବ । ମୁଁ ଭାବୁଛି ସେ ଏଠାରେ ରାତି ଭୋଜନ ସାରି ରହିଯାଉ ।"

ସ୍କୋୟାର କହିଲେ—ତୁମର କଥା ହେଉ । ମୋର କୌଣସି ଆପତ୍ତି ନାହିଁ । ସେ ବାସ୍ତବିକ୍ ବହୁତ ପରିଶ୍ରମ କଲାଣି; ବର୍ତ୍ତମାନ କ୍ଲାନ୍ତ ଜଣାପଡ଼ୁଛି ।

ମିଃ ଡାନ୍‌ସ ସେଠାରୁ ନିଜ ଘରକୁ ଫେରିଗଲେ ।

ସଙ୍ଗେ ସଙ୍ଗେ ମୋ ପାଇଁ ଖାଇବାକୁ ଆସିଲା । ମୁଁ ମନ ବୋଧ କରି ପେଟେ ମାଂସ ଖାଇଲି—ମୋ ପେଟ ଭୋକରେ ଜଳୁଥିଲା ।

ଲିଭେସି କହିଲେ—ଆଜ୍ଞା ଝେଲନି, ତୁମେ ବୋଧହୁଏ ଏଇ ଫ୍ଲିଣ୍ଟର ନାମ ଶୁଣିଥିବ ?

"ନାମ ଆଉ ଶୁଣିନାହିଁ ? ତାକୁ ଖୁବ୍ ଭଲକରି ଜାଣେ । ଏଭଳି ଜଳଦସ୍ୟୁ ଆଉ ଦ୍ୱିତୀୟ କିଏ ଅଛି ବୋଲି ମୁଁ ଜାଣେନାହିଁ । ସ୍ପେନୀୟମାନେ ତାକୁ ସାକ୍ଷାତ୍ ଯମ ପରି ଭୟ କରନ୍ତି । ସେ ଯେ ଇଂରେଜ; ବାସ୍ତବିକ ସେଥିପାଇଁ ମୋର ଗର୍ବ ହୁଏ ।"

ଲିଭେସି କହିଲେ—ମୁଁ ମଧ୍ୟ ନାଁ ଶୁଣିଛି, କିନ୍ତୁ କଥା ହେଉଛି··· ଆଚ୍ଛା ତାର କ'ଣ ବିଶେଷ ଟଙ୍କା ପଇସା ଅଛି ?

"ସେ କି କଥା ? ତାର ଟଙ୍କା ପଇସା ନାହିଁ ତ ଆଉ କାହାର ଅଛି ? ଏଇ ଦୁରାତ୍ମାମାନେ ଫ୍ଲିଣ୍ଟର ଟଙ୍କା ପାଇଁ ଏଇ କାଣ୍ଡ କରିଛନ୍ତି ।

"ଆଚ୍ଛା ବେଶ, ଫ୍ଲିଣ୍ଟର କଣ ଅଛି ତା ବର୍ତ୍ତମାନ ଦେଖି ପାରିବା । କାଗଜ ବିଡ଼ାଟା ତ ପକେଟରେ ଅଛି । ମନେକର ଯଦି ଫ୍ଲିଣ୍ଟର ଟଙ୍କା ପଇସାର ସନ୍ଧାନ ଏଇ କାଗଜ ବିଡ଼ାରୁ ମିଳିଯାଏ, ତେବେ କହିପାରିବ କି ସେ ଧନର ପରିମାଣ କେତେ ହେବ ?

"ନିଶ୍ଚୟ—ଏ କଥା କହିବାକୁ ଅଛି, ଟଙ୍କା କେଉଁଠି ଅଛି ସେ ସନ୍ଧାନ ଯଦି ମିଳେ ତେବେ ଆମେ ବ୍ରିଷ୍ଟଲ ବନ୍ଦରରୁ ଖଣ୍ଡେ କାଗଜ ନେଇ ବାହାରି ପଡ଼ିବା । ମୁଁ ତୁମକୁ ନିଶ୍ଚୟ କରି କହୁଛି, ବର୍ଷେ ପର୍ଯ୍ୟନ୍ତ ଘୂରିଲେ ସମସ୍ତ ଧନ ଯେ ଉଦ୍ଧାର କରି ଆଣିବା, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।"

"ଆଚ୍ଛା, ବେଶ ଭଲ କଥା, ଜିମ୍‌ର ଯଦି ଆପତ୍ତି ନ ଥାଏ, ତେବେ ମୁଁ ବିଡ଼ାଟାକୁ ବର୍ତ୍ତମାନ ଖୋଲେ ।"

ଏହା କହି ଡାକ୍ତର ଲିଭେସି ପକେଟରୁ କାଗଜ ବିଡ଼ାଟିକୁ ବାହାର କରି ଛୁଞ୍ଚି ଦାଗ ସବୁ ଦଉଡ଼ି କାଟି ପକାଇଲେ । ତା ଭିତରୁ ଦୁଇଟି ପଦାର୍ଥ ବାହାରିଲା । ଖଣ୍ଡିଏ ଖାତା ଓ ଗୋଟିଏ ମୋହର କରା କାଗଜ ।

ପ୍ରଥମେ ଖାତାଟି ଖୋଲା ହେଲା । ତା ଭିତରେ କଣ ସବୁ ଏଣୁ ତେଣୁ ଲେଖା ଓ ନାନା ପ୍ରକାର ଚିହ୍ନ । ତାର ମୁଣ୍ଡ ଗଣ୍ଡି କିଛି ବୁଝାଗଲା ନାହିଁ । ବହୁତ ସମୟ ଦେଖାଦେଖି ପରେ ଜଣାଗଲା ଯେ ତା ଫ୍ଲିଣ୍ଟର

ହିସାବ ବହି । ତାକୁ ରଖିଦେଇ କାଗଜ ବଣ୍ଡାଟା ଖୋଲିଦେଲି । କାଗଜଟିର ନାନା ସ୍ଥାନରେ ମୋହରର ଦାଗ ଦିଆ ହୋଇଥିଲି । ଲିଭେସି ଖୁବ୍ ସତର୍କ ଭାବରେ ମୋହର ଖୋଲି ଦେଖନ୍ତି ତ ଗୋଟିଏ ଦ୍ୱୀପର ମାନଚିତ୍ର । ଦ୍ୱୀପଟି ଲମ୍ବାରେ ନଅ ମାଇଲ, ପ୍ରସ୍ଥରେ ପାଞ୍ଚ ମାଇଲ । ଦେଖିବାକୁ ଗୋଟିଏ ବିରାଟକାୟ ଜନ୍ତୁ ପରି । କେତେଗୁଡ଼ିଏ ପାହାଡ଼, ଉପସାଗରର ନାମ ଓ ଦ୍ୱୀପକୁ ଯିବାର ସହଜ ପଥ ସେଥିରେ ଦର୍ଶା-ଯାଇଛି । ମାନଚିତ୍ରରୁ ଜଣାଗଲା, ଦୁଇଟି ଭଲ ବନ୍ଦର ଅଛି । ଠିକ ମଝିରେ ସ୍ପାଇ ଗ୍ଲାସ ନାମରେ ଗୋଟିଏ ପାହାଡ଼ । ସବା ଉପରେ ନାଲି କାଳିରେ ତିନୋଟି ଦାଗ ଦିଆଯାଇଛି । ତା ମଧ୍ୟରେ ଦୁଇଟା ଉତ୍ତରଦିଗକୁ ଆଉ ଗୋଟାଏ ଦକ୍ଷିଣ-ପଶ୍ଚିମ ଦିଗକୁ ଅଛି । ତା ପାଖରେ ନାଲି କାଳିରେ ପରିଷ୍କାର ଲେଖା ରତ୍ନସ୍ତୂପ ଏହିଠାରେ' । ମାନଚିତ୍ରର ଓଲଟା ପଟେ ସେହି ହାତଲେଖା ଅଛି, ସ୍ପାଇ ଗ୍ଲାସର ନିକଟସ୍ଥ ଡେଙ୍ଗା ଗଛଗୁଡ଼ିକ ନିକଟରେ ।

ମାନଚିତ୍ରଟି ପାଇ ସ୍କୋୟାର ଓ ଡାକ୍ତର ଭାରି ଖୁସି । ସ୍କୋୟାର କହିଲେ "ଲିଭେସି, ତୁମେ ତୁମର ଏଠିକାର ଡାକ୍ତରି ବ୍ୟବସାୟ ଛାଡ଼ି ଦିଅ । ଏଥିରେ ବା କ ପଇସା ମିଳୁଛି ? ମୁଁ କାଲି ବ୍ରିଷ୍ଟଲ ବନ୍ଦରକୁ ଯିବି । ମାସକ ଭିତରେ ଗୋଟିଏ ଭଲ ଜାହାଜ ଓ କେତେକ ବଛା ବଛା ନାବିକ ଯୋଗାଡ଼ କରିବି । ଜିମ୍ କ୍ୟାବିନ୍ ବୟ ହେବ । ଆମେ ରେଡରୁଥ, ଜୋୟି ଓ ହଣ୍ଟରକୁ ସାଙ୍ଗରେ ନେବା । ତୁମେ ଜାହାଜର ଡାକ୍ତର ହେବ, ମୁଁ ହେବି ଆଡ଼ମିରାଲ । ବର୍ତ୍ତମାନ ଉପଯୁକ୍ତ ବାୟୁ ମିଳିବ । ଯିବାକୁ ବେଶି ଡେରି ଲାଗିବନାହିଁ । ଦ୍ୱୀପଟି ସହଜରେ ଆବିଷ୍କାର କରିହେବ । ଏହି ଧନରତ୍ନ ପାଇବାକୁ କୌଣସି କଷ୍ଟ ହେବନାହିଁ । ଅଜସ୍ର ଧନ ଆମେ ପାଇଯିବା । ପାଣିଭଳି ଅଜାଡ଼ ଦେଲେ ମଧ୍ୟ ତାହା କେବେ ଶେଷ ହେବନାହିଁ ।

ଡାକ୍ତର ଲିଭେସି କହିଲେ—ମୁଁ ନିଶ୍ଚୟ ତୁମ ସଙ୍ଗରେ ଯିବି । ଜିମ୍ ଯେ ଯିବ, ଏଥିରେ ସନ୍ଦେହ ନାହିଁ; କିନ୍ତୁ ଜଣେ ଲୋକକୁ ମୋର ଭୟ । ତାକୁ ନ ନେଲେ ବୋଧହୁଏ ଭଲ ହେବ ।"

ସ୍କୋୟାର ଚିତ୍କାର କରି ଉଠିଲେ "କିଏ ସେ ପାଷଣ୍ଡ—ତା ନାଁ କଣ ?"

ଲିଭେସି ବାଧା ଦେଇ କହିଲେ "ଆହା—ଥୟ ଧର, ଥୟ ଧର ଏତେ ଅସ୍ଥିର ହୁଅନାହିଁ । ସେ ଲୋକଟି ଆଉ କେହି ନୁହେଁ । ସେ ଆମର ଟ୍ରିଲନୀ । ତୁମର ତ କୌଣସି କଥା ପେଟରେ ରହେ ନାହିଁ । ଯାହା ତାହା ଆଗରେ କହିବୁଲ । ଏଇ ଯେ କାଗଜ ଖଣ୍ଡିକ, ଏହିବିଷୟ ଯେ କେବଳ ଆମେ ଜାଣୁ ତାହା ମନେକରିବ ନାହିଁ । ଯେତେ ଜଳଦସ୍ୟୁ ବେନବୋକୁ ଆସିଥିଲେ ସେମାନେ ସମସ୍ତେ ଜାଣନ୍ତି । ତା'ଛଡା ଆହୁରି ଅନେକ୍ଲେ ଏ ବିଷୟ ଜାଣିଥିବେ । ଆମେ ସମସ୍ତେ ମୁହଁ ବନ୍ଦକରି ରହିବ । କଣ ପାଇଛୁ, କଣ ନ ପାଇଛୁ ସେ ବିଷୟ ଗୋଟିଏ ବର୍ଣ୍ଣ ଯେପରି କାହା ଆଗରେ ପ୍ରକାଶ ନ ପାଏ । ଆଉ ଗୋଟିଏ କଥା । ତୁମେ ବ୍ରିଷ୍ଟଲ ଯିବା ବେଳକୁ ଜୋସି ଓ ହଣ୍ଟରକୁ ସାଙ୍ଗରେ ନେଇଯାଅ । ବର୍ତ୍ତମାନ ଏକାକୀ ଯିବା ଆସିବା କରିବା ନିରାପଦ ନୁହେଁ । ଜିମ୍ ମୋ ପାଖରେ ଥାଉ ।"

ସ୍କୋୟାର ଅଳ୍ପ ହସି ଜବାବ ଦେଲେ "—ଉତ୍ତମ ପ୍ରସ୍ତାବ ଲିଭେସି । ତୁମେ ଠିକ୍ କହୁଛ । ମୁଁ ଏଥର ନିଶ୍ଚୟ ମୁଁହ ବନ୍ଦ କରି ରହିବ ।"

## ମୋର ବ୍ରିଷ୍ଟଲ ଯାତ୍ରା

ସ୍କୋୟାର ଟ୍ରିଲେନୀଙ୍କ କଥା ଅନୁସାରେ ଯାତ୍ରା କରିବାର ଆୟୋଜନ ଶୀଘ୍ର ହୋଇପାରିଲା ନାହିଁ । ଡାକ୍ତର ତାଙ୍କର ଦାୟିତ୍ୱ ଇତ୍ୟବସରରେ ଅନ୍ୟ ଜଣେ ଡାକ୍ତରଙ୍କୁ ଦେବା ନିମନ୍ତେ ଲଣ୍ଡନ ଗଲେ । ସ୍କୋୟାର ଟ୍ରିଲେନୀ ବ୍ରିଷ୍ଟଲ ବନ୍ଦରରେ ନାନା ପ୍ରକାର ଆୟୋଜନରେ ଲାଗିଲେ । ମୁଁ ହଲ୍ ସହରରେ ସ୍କୋୟାରଙ୍କ ଜଣେ କର୍ମଚାରୀଙ୍କ ନିକଟରେ ପ୍ରାୟ ବନ୍ଦୀ ଭଳି ରହିଲି । ସେ କର୍ମଚାରୀଙ୍କ ନାମ ରେଡ଼ରୁଥ । ମୁଁ ସେଠାରେ ରହିଲି ସତ; ମାତ୍ର ମନ ମୋର ସମୁଦ୍ରରେ ଉଡ଼ି ବୁଲୁଥାଏ । ଘରେ ବସି ନିଆଁ ପୁଆଉଁଥିବା ବେଳେ ସେହି ଦ୍ୱୀପ ମୋ ଆଖି ଆଗରେ ନାଚୁଥାଏ । ମୁଁ ମନେମନେ ହଜାରେ ଥର ଭିନ୍ନ ଭିନ୍ନ ଦିଗରୁ ଯାଇ ଗ୍ଲାସ ଉପରେ ଚଢ଼ୁଥାଏ । କେତେବେଳେ କଳ୍ପନାରେ ହସି ଆନନ୍ଦରେ ଅଧୀର ହୋଇପଡେ । କେତେବେଳେ ବା ଦ୍ୱୀପର ଘନଜଙ୍ଗଲରେ ଭୟଙ୍କର

ଜନ୍ତୁ ସହ ଯୁଦ୍ଧରେ ମାଡ଼ଯାଏ । କେବେ ଅବା ଭୟାବହ ଜନ୍ତୁମାନଙ୍କର ଆକ୍ରମଣରେ ଆକ୍ରାନ୍ତ ହୋଇପଡ଼େ । ଏହିଭଳି ନାନା ସ୍ୱପ୍ନରେ ମନ ଭୋଳ ରହିଥାଏ । କିନ୍ତୁ ପରେ ବାସ୍ତବରେ ଯାହା ଘଟିଲା, ତାହା ଏହାଠାରୁ ଅଧିକ ଭୟାବହ ।

ସତ୍ୟ ଘଟଣା ଯେ କଳ୍ପନାଠାରୁ ଏତେ ବେଶି, ସେତେବେଳେ ତାହା ମୁଁ ଭାବିପାରି ନ ଥିଲି । କେତେ ସପ୍ତାହ ବିତିଗଲା, ତତ୍ପରେ ସେହି ଶୁଭଦିନ ଲିଭେସିଙ୍କ ଠିକଣାରେ ଗୋଟିଏ ଚିଠି ଆସିଲା । ତା' ଉପରେ ଲେଖାଥିଲା ଯେ ଏ ଚିଠି ଲିଭେସିଙ୍କ ଅନୁପସ୍ଥିତିରେ ରେଡ଼ରୁଥ୍ ବା ବାଳକ (ହାଓକିନ୍ ଜିମ୍ ମୁଁ ନିଜେ) ଦ୍ୱାରା ଖୋଲା ହୋଇପାରେ । ତାଙ୍କ କଥା-ଅନୁସାରେ ମୁଁ ଚିଠି ଖୋଲିଲି । ଚିଠିରେ ନିମ୍ନଲିଖିତ ଜରୁରୀ ଖବର ଲେଖାଥିଲା ।

ପ୍ରିୟ ଲିଭେସି,

ତୁମ୍ଭେ ବର୍ତ୍ତମାନ ହଲ୍‌ରେ କିମ୍ବା ଲଣ୍ଡନରେ ଅଛ ଜାଣି ନ ଥିବାରୁ ଉଭୟ ସ୍ଥଳକୁ ଚିଠିପଠାଇଲି ।

ଗୋଟିଏ ଶ୍ରେଷ୍ଠ ଜାହାଜ କିଣା ହୋଇଛି । ଅତିସୁନ୍ଦର ଜାହାଜ । ପ୍ରାୟ ଦୁଇସହ ଟନ ଓଜନ—ନାମ ତାର ହିସପାନିଓ୍ୱାଲ୍ । ଗୋଟିଏ ପିଲା ମଧ୍ୟ ଏହାକୁ ଅକ୍ଳେଶରେ ଚଳାଇପାରିବ । ମୋର ବନ୍ଧୁ ବ୍ଲାଣ୍ଡଲିର ଚେଷ୍ଟାରେ ଏଭଳି ଜାହାଜଟିଏ ମିଳିଗଲା । ଏଠାରେ ଅକସ୍ମାତ୍ ଜଣେ ବୃଦ୍ଧ ନାବିକ ସହିତ ମୋର ସାକ୍ଷାତ ହୋଇଛି । ବ୍ରିଷ୍ଟଲର ପ୍ରାୟ ସବୁ ସମୁଦ୍ର ଯାତ୍ରିଙ୍କ ସହିତ ପରିଚିତ । ଏହି ସମୁଦ୍ର ଯାତ୍ରାରେ ତା'ର ସ୍ୱାସ୍ଥ୍ୟହାନି ହୋଇଛି । ବର୍ତ୍ତମାନ ସେ ରାନ୍ଧିବାପାଇଁ ନିଯୁକ୍ତ ହୋଇ ପୁନର୍ବାର ସମୁଦ୍ରମଧ୍ୟକୁ ଯିବାକୁ ଚାହେଁ । ତା'ର ନାମ ଲଂଜନ ସିଲଭର । ସ୍ୱଦେଶ ନିମନ୍ତେ କାର୍ଯ୍ୟକରି ତା'ର ଗୋଟିଏ ଗୋଡ଼ ଗ୍ଲେଟା, ମାତ୍ର ତାକୁ ପେନ୍‌ସନ ମିଳୁନାହିଁ । ଲିଭେସି କି ଅନ୍ୟାୟ ଭାବି- ପାରୁଛ ? ଲୋକଟିର କଥାବାର୍ତ୍ତା ବେଶ ଭଲ । ମୁଁ ତାକୁ ଆମ ଜାହାଜର ପାଚକ କରିବାକୁ ସ୍ଥିର କରିଛି । ସିଲଭର ଓ ମୁଁ ଉଭୟେ ଆଲୋଚନାକରି ଜାହାଜରେ ନେବା ନିମନ୍ତେ ଛଅ ସାତଜଣ ନାବିକ ଠିକ୍ କରିଛୁ । ମୁଁ

ବର୍ତ୍ତମାନ ଖୁବ୍ ସୁସ୍ଥ ମନ ଓ ସୁସ୍ଥ ଦେହରେ ଅଛି । ମନ ଇଚ୍ଛା ଖାଉଛି, କୁମ୍ଭକର୍ଣ୍ଣପରି ଶୋଉଛି । ତଥାପି ସମୁଦ୍ରଯାତ୍ରା ଆରମ୍ଭ ନ ହେବା ପର୍ଯ୍ୟନ୍ତ ମୋର ଶାନ୍ତି ନାହିଁ । ନୂଆ ଆବିଷ୍କାର କରିବାକୁ ହେବ । ସମୁଦ୍ରରେ ଜାହାଜ ମେଲିବା ପାଇଁ ମୁଁ ପାଗଳ ହୋଇପଡ଼ିଲଣି । ମୋଠାରେ ତିଳେ ହେଲେ ସମ୍ମାନ ଥିଲେ ତୁମେ ଶୀଘ୍ର ଆସ । ଆଉ ବିଳମ୍ବ କରନାହିଁ । ଜିମ କୁ ରେଡ଼୍ରୁଥ ସାଙ୍ଗେ ତାର ମାଆକୁ ଦେଖିବାକୁ ପଠାଇଦିଅ । ତାପରେ ଅତି ଶୀଘ୍ର ବ୍ରିଷ୍ଟଲକୁ ଆସ । ଜୋନ୍ ଟ୍ରିଲନି ସ୍କୋୟାର । ପୁନଶ୍ଚ ତୁମକୁ କହିବାକୁ ଭୁଲିଯାଇଛି, ବ୍ଲାଣ୍ଡିଲ ଗୋଟିଏ ସୁଦକ୍ଷ ନାବିକ ଠିକ୍ କରିଛି । ଅଗଷ୍ଟ ମାସ ଶେଷକୁ ସେ ଆସିବ । ସିଲ୍‌ଭର ଗୋଟିଏ ଭଲ ସଙ୍ଗୀ ଠିକ୍ କରିଛି ତା'ର ନାମ ଏ୍ୟାରୋ । ଜିମ ତା'ର ମାଆ ନିକଟରେ ଗୋଟିଏ ରାତି ରହିପାରେ; ବେଶି ନୁହେଁ ।"

ଚିଠିଟି ମୋତେ କିଭଳି ଭାବରେ ଉତ୍ତେଜିତ କଲା ତାହା ଅନୁମାନ କରିବା ସହଜ ନୁହେଁ । ମୁଁ ଆନନ୍ଦରେ ଆତ୍ମହରା ହୋଇପଡ଼ିଲି । ପରଦିନ ସକାଳେ ରେଡ଼୍ରୁଥ ସାଙ୍ଗରେ ଏଡ଼ମିରାଲ ବେନବୋକୁ ଗଲି । ମୋର ମାଆ ସେଠାରେ ବେଶ୍ ଭଲରେ ଥିଲେ । କାପ୍ତାନ୍ ଚାଲିଯାଇଥିବାରୁ ଅବସ୍ଥା ଶାନ୍ତ ପଡ଼ିଥିଲା । ସ୍କୋୟାର ସବୁ ଜିନିଷପତ୍ର ମରାମତି କରି ଦେଇ-ଥିଲେ । ମାଆଙ୍କ ପାଇଁ ଅତି ସୁନ୍ଦର ଆରାମ ଚୌକିଟିଏ ଦେଇଥିଲେ । ସାହାଯ୍ୟ କରିବାକୁ ବାଳକଟିଏ ନିଯୁକ୍ତ କରାଇଥିଲେ । ମୋ ବିନା ମାଆଙ୍କର କୌଣସି ଅସୁବିଧା ହେଉ ନ ଥିଲା । ସେ ପିଲାଟିକୁ ଦେଖି ମୁଁ ମୋର ଅବସ୍ଥା ଅନୁମାନ କରିନେଲି । ସମ୍ମୁଖରେ ଥିବା ନୂଆ ଉତ୍ତେଜନା ପୂର୍ଣ୍ଣ ଘଟଣା ମୋ ଆଖି ଆଗରେ ଭାସିଗଲା । ଘରଛାଡ଼ି ଚାଲିଯାଉଛି—ମାତ୍ର ସେଥିପାଇଁ ନୁହେଁ-ସେହି ଅପରିଚିତ ଆଗନ୍ତୁକ ପିଲାଟି ମାଆଙ୍କ ପାଖରେ ମୋ ସ୍ଥାନ ଅଧିକାର କରିଥିବାର ଦେଖି ଦୁଃଖରେ ଆଖିରୁ ଲୁହ ବୋହି-ପଡ଼ିଲା ।

ରାତିଟି ସେଠାରେ କଟାଇଲି । ପରଦିନ ଖିଆପିଆ ସାରି ରେଡ଼୍-ରୁଥ ଓ ମୁଁ ସେଠାରୁ ଚାଲି ଆସିଲୁ । ମାଆଙ୍କଠାରୁ ବିଦାୟ ଆଣିଲି ।

ଆଜନ୍ମରୁ ବାସ କରିଥିବା ମୋର ଅତି ପ୍ରିୟ ଏଡ଼ମିରାଲ ବେନବୋଠାରୁ ମଧ୍ୟ ବିଦାୟ ନେଲି । ଯେତେବେଳେ ସେହି କାପ୍ତାନ୍ କଥା ମୋର ମନେ ପଡ଼ୁଥାଏ । ତାର ଟୋପି, ତାର ଗାଲର କଟା ଦାଗ ସବୁଠାରୁ ବେଶି ସେହି ପୁରୁଣା ତମ୍ବା ଦୂରବୀକ୍ଷଣ ଯନ୍ତ୍ରଟି ।

ଅଳ୍ପ ସମୟ ଭିତରେ ଆମେ ଅନେକବାଟ ଚାଲିଆସିଲୁ । ମୋ ଘର ଗଛ ଉହାଡ଼ରେ ଲୁଚିଗଲା । ଆଉ ଦେଖାଗଲା ନାହିଁ ।

ସ୍କୋୟାରଙ୍କ ପତ୍ରରୁ ଆମେ ବୁଝିଥିଲୁ ଯେ, କଥାଟା ସେ ପେଟରେ ରଖିପାରି ନାହାନ୍ତି । କାହା କାହା ଆଗରେ କିଛିକିଛି ପ୍ରକାଶ କରି ପକାଇଛନ୍ତି । କମଟା ଭଲ ହୋଇନାହିଁ । ଯାହାହେଉ ସେକଥା ଭାବି ଲାଭନାହିଁ । ଆମେ ତା ପରଦିନ ବ୍ରିଷ୍ଟଲ ଅଭିମୁଖରେ ଯାତ୍ରାକଲୁ ।

ଗାଡ଼ିରେ ବାଟସାରା କଣେଇ ନିଦରେ ଶୋଇପଡ଼ିଲୁ । ହଠାତ୍ ନିଦ ଭାଙ୍ଗିଗଲା । ଚାହିଁ ଦେଖିଲି—ଆଖି ଆଗରେ ବଡ଼ ବଡ଼ କୋଠା-ବାଡ଼ି, ବେଳ ଆସି ବୁଡ଼ିଗଲାଣି । ରେଡ଼ରୁଥ ପଚାରି ବୁଝିଲା ଏହି ବ୍ରିଷ୍ଟଲ ବନ୍ଦର ।ଠିକଣା ଖୋଜି ଆମେ ସ୍କୋୟାରଙ୍କ ହୋଟେଲ ପାଖରେ ପହଁଞ୍ଚିଲୁ ହୋଟେଲ ଆଗରେ ତାଙ୍କ ସହ ସାକ୍ଷାତହେଲା । ସେ ନୀଳ ରଙ୍ଗର ପୋଷାକ ପିନ୍ଧି ଜାହାଜର ନାବିକ ସାଜିଥାନ୍ତି । ଆମକୁ ଦେଖି କହିଲେ, "ଏଇତ; ତୁମେମାନେ ଆସିଗଲ, ସବୁ ପ୍ରସ୍ତୁତ । ଡାକ୍ତର କାଲି ରାତିରେ ଲଣ୍ଡନରୁ ଆସି ପହଞ୍ଚିଛନ୍ତି । ବାସ, ଏଥର ସବୁ ଠିକ୍ ହୋଇଗଲା । ମୁଁ ପଚାରିଲି କେବେ ଆମେ ଅନୁକୂଳ କରିବା ? ସେ କହିଲେ, ଅନୁକୂଳ; କାଲି ତ ନିଶ୍ଚୟ, ବାହାରିପଡ଼ିବା ।

## ଜାହାଜର ପାଚକ, ସେହି ଛୋଟା

ସକାଳେ ଖିଆପିଆ ସାରିଲା ପରେ ସ୍କୋୟାର ମୋ ହାତରେ ଖଣ୍ଡିଏ ଚିଠିଦେଇ କହିଲେ "ଜମ୍ ଏ ଚିଠି ଜନ ସିଲ୍ଭରକୁ ଦେବାକୁ ହେବ । ବର୍ତ୍ତମାନ ଯାଅ, ତାକୁ ଖୋଜି ବାହାର କରିବା କଷ୍ଟକର ହେବନାହିଁ । ଠିକ୍ ସିଧାଯାଇ ଦେଖିବ, ଗୋଟିଏ ଗ୍ରେଟ ସରାଇଖାନା; କବାଟରେ ଗୋଟିଏ ବଡ଼ ଦୂରବୀକ୍ଷଣଯନ୍ତ୍ର ଅଙ୍କାହୋଇଛି ।

ମୁଁ ତାଙ୍କ କଥା ଅନୁସାରେ ଚିଠିଧରି ଗଲି । ସରାଇଖାନା ଦରଜା ନିକଟରେ ପହଞ୍ଚ ଦେଖେ ତ ଘର ଭିତରେ ଅନେକ ଲୋକ ବସି ଚୁରୁଟ ଟାଣୁଛନ୍ତି, ପାଖେପାଖେ କେତେ କଅଣ ଆଲୋଚନା ଚାଲିଛି । ଚୁରୁଟ ଧୂଆଁରେ ଘରଟା ଅନ୍ଧକାର ହୋଇଯାଉଛି । ଘରେ ପ୍ରବେଶ କରିବା ମାତ୍ରକେ ଯାହାଉପରେ ପ୍ରଥମେ ଆଖି ପଡ଼ିଗଲା, ମନେହେଲା ସେହି ବୋଧହୁଏ ଲଂଜନ । କାରଣ ତାର ବାମ ପାଦ ପାଖ ଆଣ୍ଠୁଠାରୁ କଟା ଓ କାଖଠାରୁ ଗୋଟିଏ ନକଲି କାଠଗୋଡ଼ ବନ୍ଧା ଯାଇଛି । ଲୋକଟି ଖୁବ୍ ଡେଙ୍ଗା, ମୁହଁଟା ଟିକିଏ ବଡ଼, ବେଶ୍ ହସଖୁସ୍ ।

ସ୍କୋୟାର ଟ୍ରିଲ୍ନିଙ୍କର ଠିକ୍ରୁ ଲଂଜନର ନାମ ଓ ବର୍ଣ୍ଣନା ଶୁଣି ମୋର ସନ୍ଦେହ ହେଉଥିଲା, ବେନବୋରେ ଯେଉଁ ଲୋକଟାର ସନ୍ଧାନ ନେଉଥିଲି, ଏ ବୋଧହୁଏ ସେହି ହେବ । ଯାହାହେଉ, ଖୁବ୍ ସାହସର ସହିତ ନିକଟକୁ ଯାଇ ଚିଠିଟି ବଢ଼ାଇ ଦେଲି । ପଚାରିଲି 'ଆପଣ ବୋଧହୁଏ ଜନ୍ ସିଲ୍ଭର ?'

"'ହଁ, ବାପା—ମୋର ନାମ ସିଲଭର । ତୁମେ କିଏ ?"—ଏହା କହି ଚିଠି ଖଣ୍ଡିକ ଖୋଲି ପକାଇଲେ । ତା ଉପରେ ଆଖି ବୁଲାଇ ନେଇ କହିଲେ, "ଓହୋ' ତୁମେ ଆମ କ୍ୟାବିନ୍ ବୟ ହେବ । ବେଶ୍ ବେଶ୍, ତୁମକୁ ଦେଖି ଭାରି ଖୁସି ହେଲି ।" ଏହା କହି ସେ ଆଦରକରି ମୋତେ ପାଖକୁ ଟାଣିନେଲେ । ସେହି ମୁହୂର୍ତ୍ତରେ ଜଣେ ଲୋକ ପବନ ବେଗରେ ଘରୁ ବାହାରକୁ ପଳାଇଲା । ମୁଁ ଦେଖିବାମାତ୍ରେ ତାକୁ ଚିହ୍ନି ପକାଇଲି ହାତ ଅଙ୍ଗୁଳି କଟା ସେହି ବ୍ଲାକ୍‌ଡଗ । ମୁଁ ତାକୁ ଦେଖି ଚିତ୍କାରକରି ଉଠିଲି 'ଏଇ ବ୍ଲାକ୍‌ଡଗ୍ ପଳାଇଲା ।'

ମୋ ମୁହଁରୁ ବ୍ଲାକଡଗ୍ ନାମ ଶୁଣି ସିଲଭର ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ତୁମେ କଣ କହିଲ ? ତା ନାମ କଣ ବ୍ଲାକ୍··· ।"

ମୁଁ କହିଲି—"ବ୍ଲାକ୍ ଡଗ୍, ହଁ, ତାକୁ ଚିହ୍ନିଛି । ସେ ବେନବୋକୁ ଯାଇଥିଲା, ମୁଁ ଅନ୍ଧ ପିଉକୁ ଚିହ୍ନିଛି । ଏମାନେ ସବୁ ଜଳଦସ୍ୟୁ । ସ୍କୋୟାର କ'ଣ ତୁମମାନଙ୍କୁ ଏମାନଙ୍କ କଥା କିଛି କହିନାହାଁନ୍ତି ?"

ସ୍ପଷ୍ଟ ଭାବରେ ବୁଝିପାରିଲି ଯେ ମୋ କଥା ଶୁଣି ସେମାନେ ଟିକିଏ ଉତ୍ତେଜିତ ହୋଇପଡ଼ିଲେ । ସମସ୍ତେ କେଜାଣି କ'ଣ ଠାରଠାରି ହେଲେ । ସିଲ୍ଭର ମତେ ଡା' ମରଗ୍ୟାନ ସଙ୍ଗେ ପରିଚୟ କରାଇଦେଲେ । କିଛିକ୍ଷଣ ପରେ ପୋଷାକ ପରିବର୍ତ୍ତନ କରି ସିଲ୍ଭର ମୋ ସାଙ୍ଗରେ ଆସିଲେ । ରାସ୍ତାସାରା ମତେ ଜାହାଜ ଓ ନାବିକଙ୍କ ବିଷୟରେ ନାନାପ୍ରକାର ଗଳ୍ପ କହିବାକୁ ଲାଗିଲେ । ମୋର ମନେହେଲା, ଏ ଜାହାଜର ପକ୍କା ଲୋକ; କିନ୍ତୁ ସେ ପିଉ ଓ ବ୍ଲାକ୍‌ଡଗ୍‌କୁ ଚିହ୍ନିନାହାଁନ୍ତି ବୋଲି କହିଲା—ଏଥିରେ ମନରେ ଟିକିଏ ସନ୍ଦେହ ହେଲା; ମାତ୍ର ମୁଁ ସେକଥା ପ୍ରକାଶ କଲିନାହିଁ ।

## ପ୍ରଥମ ଆଲୋଚନା

ଆମେ ପହଞ୍ଚିବା ସଙ୍ଗେ ସଙ୍ଗେ ଷ୍ଟୋୟାର ଟ୍ରିଲ୍ନି କହିଲେ, "ଆଉ ଡେରି କାହିଁକି ? ଚାଲ ସମସ୍ତେ ମିଶି ଜାହାଜ ଭିତରକୁ ଯିବା ।"

ଆମେମାନେ ଆନନ୍ଦ ମନରେ ଯାତ୍ରାକଲୁ । ଜାହାଜ ଭିତରକୁ ଯିବାକ୍ଷଣି ନବନିଯୁକ୍ତ ଅଧ୍ୟକ୍ଷ ମିଃ ଆରୋ ସମସ୍ତଙ୍କୁ ଅତି ଭକ୍ତିରେ ନମସ୍କାର କରି ସମ୍ବର୍ଦ୍ଧନା ଜଣାଇଲେ । ମୁଁ ଦେଖିଲି ମିଃ ଆରୋ ବୟସରେ ବୃଦ୍ଧ; କିନ୍ତୁ ମନରେ ଯୁବକ । ଏବେ ମଧ୍ୟ ବେଶ ପୋଷାକର ଆଡ଼ମ୍ବର ପୂରାମାତ୍ରାରେ ଅଛି । ଦୁଇ କାନରେ ଦୁଇଟା ରିଂ ଝୁଲୁଛି । ଷ୍ଟୋୟାରଙ୍କ ସାଙ୍ଗରେ ବେଶ୍ ବନ୍ଧୁତା ଥିଲାଭଳି ଜଣାଗଲା ; କିନ୍ତୁ ମୋ ମନରେ ଧାରଣାହେଲା, ଏ ବନ୍ଧୁତା ଯେପରି କି କେବଳ ବାହ୍ୟ ।

ଡାଃ ଲିଭେସି, ଷ୍ଟୋୟାର ଓ ମୁଁ ଜାହାଜରେ କେବିନ୍ ମଧ୍ୟରେ ପ୍ରବେଶ କରିବା ମାତ୍ରେ କାପ୍ତାନ୍ ସ୍ମୋଲେଟ୍ ଆମ ପଛେ ପଛେ ଆସି କବାଟ ବନ୍ଦ କରିଦେଲେ—ଷ୍ଟୋୟାରଙ୍କୁ ଚାହିଁ କହିଲେ, 'ଦେଖନ୍ତୁ, ଆପଣ ବିରକ୍ତ ହୁଅନ୍ତୁ, ଯାହା କରନ୍ତୁ, ମନର କଥା ପରିଷ୍କାର କରି କହିଦେବା ମୁଁ ପସନ୍ଦ କରେ । ଆପଣଙ୍କଦ୍ୱାରା ନିଯୁକ୍ତ ଜାହାଜର ଏହି କର୍ମଚାରୀମାନଙ୍କୁ ମୁଁ ଆଦୌ ପସନ୍ଦ କରେନାହିଁ ।"

ସ୍କୋୟାର ଏହା ଶୁଣି ଟିକଏ ରାଗିଗଲାଭଳି ବୋଧହେଲା । ତାଙ୍କ ସ୍ୱର ମଧ୍ୟ କଡ଼ା ଶୁଣାଗଲା । "ବୋଧହୁଏ ଆମର ଏ ଜାହାଜ ଖଣ୍ଡିକ ମଧ୍ୟ ଆପଣଙ୍କର ପସନ୍ଦ ହେଉନାହିଁ ।"

"ସେ କଥା ମୁଁ ବର୍ତ୍ତମାନ ଠିକ୍‌କରି କହିପାରିବି ନାହିଁ । ସମୁଦ୍ରରେ ଗଲେ ତାହା ଜଣାଯିବ । ବର୍ତ୍ତମାନ ଏତିକି କହିପାରେ ଯେ, ଏହା ଦେଖିବାକୁ ଭଲ । କାର୍ଯ୍ୟ ସମୟରେ କ'ଣ ହେବ କିଏ କହିବ ?"

"ଆପଣଙ୍କୁ ଏଇ ଜାହାଜରେ ଯେଉଁ ଲୋକ ନିଯୁକ୍ତ କରିଛନ୍ତି, ଆପଣ ବୋଧହୁଏ ତାଙ୍କୁ ବି ପସନ୍ଦ କରନ୍ତିନାହିଁ ।"

ସ୍କୋୟାର୍‌ଙ୍କର ଏ ପ୍ରକାର କଥା ଶୁଣି ଲିଭେସି ମଝିରେ ବାଧା ଦେଲେ । ସମାଧାନ ସ୍ୱରରେ ସେ କହିଲେ, "ରହ, ରହ ଏଭଳି କଥାବାର୍ତ୍ତା କାହିଁକି ? ଏଥିରେ ଅନର୍ଥକ ଆମ ମଧ୍ୟରେ ବିଦ୍ୱେଷଭାବ ବଢ଼ିଉଠିବ । ସେ ସବୁ କଥା ଛାଡ଼ । କାପ୍ତାନ୍ କହିଲେ ଯେ ସେ ନାବିକ-ମାନଙ୍କୁ ପସନ୍ଦ କରନ୍ତି ନାହିଁ; ତାର କାରଣ କଅଣ ଆମେ ଜାଣିପାରିବା ନାହିଁ ?"

କାପ୍ତାନ୍ ଗୋଲେଟ୍ କହିଲେ, "ଖାଲି ନାବିକ କାହିଁକି, ଆରମ୍ଭରୁ ସମସ୍ତ ଘଟଣା ମୋର ପସନ୍ଦକୁ ଆସୁନାହିଁ । ମତେ ଜାହାଜର କାପ୍ତାନ୍ ରୂପେ ନିଯୁକ୍ତ କରାଯାଇଛି; କିନ୍ତୁ କୌଣସି କଥା କୁହାଯାଇ-ନାହିଁ । ଜାହାଜର ଅନ୍ୟ ସମସ୍ତ କର୍ମଚାରୀ ଯେଉଁ କଥା ଜାଣନ୍ତି, ମୁଁ ତାର ବିନ୍ଦୁ ବିସର୍ଗ ବି ଜାଣେ ନାହିଁ । ଶୁଣିଲି, ଆପଣମାନେ ସମସ୍ତେ ରତ୍ନ ଆଶାରେ ଯାଉଛନ୍ତି; କିନ୍ତୁ ରତ୍ନଲାଭ କରିବା ତ ସହଜସାଧ୍ୟ ନୁହେଁ । ଆଉ ମଧ୍ୟ ସବୁଠାରୁ ଖରାପ କଥା ହେଉଛି, ଘଟଣାଟା ସମସ୍ତେ ଜାଣନ୍ତି; କିନ୍ତୁ ପ୍ରକାଶ୍ୟରେ କେହି କିଛି କହିବାକୁ ଚାହାନ୍ତି ନାହିଁ । ଆପଣମାନେ ବୁଝିପାରୁ ନାହାନ୍ତି ଯେ କି ବିପଦ ମଧ୍ୟରେ ଆପଣ ଆଗେଇ ଯାଉଛନ୍ତି; ଏପରିକି ଆପଣମାନେ ଯାହାକୁ ଅତି ଗୁପ୍ତ ବୋଲି ମନେକରନ୍ତି, ତାହା ଏ ଅଞ୍ଚଳର ଗଗନ ପବନରେ ମଧ୍ୟ ଭାସିବୁଲୁଛି ।" ମିଷ୍ଟର ଟ୍ରିଲନିଙ୍କୁ ଚାହିଁ—"ଆପଣ କ୍ଷମାଦେବେ, ଏହା କଅଣ ସତ ନୁହେଁ ?"

ଡାଃ ଲଭେସି କହିଲେ, "ତା ଠିକ୍ ଜାଣିଛୁ, ବିପଦକୁ ସାଥିରେ ଧରି ଆମେ ତ ବାହାରିଛୁ; କିନ୍ତୁ ନାବିକମାନଙ୍କ ବିରୁଦ୍ଧରେ କ'ଣ କହିବାର ଅଛି କହିଲେ ନାହିଁ। ସେମାନେ କ'ଣ ଭଲ ଭାବରେ କାର୍ଯ୍ୟ-ଦକ୍ଷ ନୁହନ୍ତି ?"

କାପ୍ତାନ୍—ସେମାନଙ୍କ ବିରୁଦ୍ଧରେ ମୋର ସେଭଳି କିଛି ଅଭିଯୋଗ ନାହିଁ; କିନ୍ତୁ ସେମାନଙ୍କର ଚାଲିଚଳନ ମତେ କିଛି ଭଲ ଦେଖାଯାଉନାହିଁ । ଆଉ ଏଇ ଯେ ଅଧ୍ୟକ୍ଷ ସ୍ୱାରେ—ସେ କିଛି ସହଜ ଲୋକ ନୁହନ୍ତି । କାମ ଭଲ କରନ୍ତି ସତ; କିନ୍ତୁ ନାବିକମାନଙ୍କ ସଙ୍ଗେ ଏଭଳି ଭାବରେ ମିଳାମିଶା କରନ୍ତି ଯେ କୌଣସି ବିବେକୀ ଅଧ୍ୟକ୍ଷ ତାହା କେବେ କରିବନାହିଁ ।

ଡାଃ ଲଭେସି—ଆଚ୍ଛା ଏ ସବୁ କଥା ଥାଉ; ବର୍ତ୍ତମାନ ଆପଣ କ'ଣ କରିବାକୁ ଚାହାନ୍ତି କୁହନ୍ତୁ ।

କାପ୍ତାନ୍—ତା ହେଲେ, ଆପଣଙ୍କର ଏହି ସବୁ ଲୋକଙ୍କୁ ସାଙ୍ଗରେ ନେଇ ବାହାରିବା ନିଶ୍ଚିତ ତ ?

ସ୍କୋୟାର୍—ନିଶ୍ଚୟ !

କାପ୍ତାନ୍—ଆଚ୍ଛା ! ବେଶ୍; ତେବେ ମୋର ପ୍ରଥମ କଥା ହେଲା; ସେମାନେ ଏତେ ପରିମାଣ ଅସ୍ତ୍ରଶସ୍ତ୍ର ଓ ବାରୁଦ ନିଜ ପାଖରେ ଜମାଇ ରଖିଛନ୍ତି କାହିଁକି ?

କେବିନରେ ଯଥେଷ୍ଟ ଜାଗା ଅଛି । ସେଠାରେ ତାହା ସବୁ ନିରାପଦରେ ରଖା ହେଉନାହିଁ ? ଦ୍ୱିତୀୟ କଥା, ରତ୍ନ ବିଷୟ ଏତେ ଆଲୋଚନା କରିବା କି ଦରକାର । କୌଣସି କଥା ଗୋପନ ରହୁନାହିଁ । ମୁଁ ତ କିଛି ଜାଣେନାହିଁ । ଲୋକମାନଙ୍କ ମୁହଁରୁ ଯାହା ଶୁଣୁଛି, ତାହାହିଁ କହୁଛି । ଆପଣମାନଙ୍କ ପାଖରେ ଗୋଟିଏ ମାନଚିତ୍ର ଅଛି । କେଉଁଠି ରତ୍ନ ଖୋଜିବାକୁ ହେବ, ସେ ସ୍ଥାନ ମାନଚିତ୍ରରେ ଦାଗ ଦିଆଯାଇଛି । ଏହା କହି ସେ ସେହି ସ୍ଥାନର ଅକ୍ଷାଂଶ ଓ ଦ୍ରାଘିମା ସଠିକ୍ ଭାବରେ କହିଦେଲେ ।

ତାହା ଶୁଣି ଷ୍କୋୟାର ଚିତ୍କାର କରି ଉଠିଲେ—ଏ କଥା ମୁଁ କାହାକୁ କହିନି । ଲିଭେସି ! ଏ କାର୍ଯ୍ୟ ତୁମଦ୍ୱାରା କିମ୍ବା ଜିମଦ୍ୱାରା ହୋଇଛି ।

କାପ୍ତାନ୍ କହିଲେ, "ଯାହାର ହେଉନା କାହିଁକି, କାମଟା ଭଲ ହୋଇନାହିଁ । ମାନଚିତ୍ରଟି କାହା ନିକଟରେ ଅଛି, ତାହା କେହି ଜାଣିନାହାନ୍ତି ସତ୍ୟ; କିନ୍ତୁ କଥାଟା ଗୋପନ ରଖିବା ଉଚିତ୍ ଥିଲା; ଏପରିକି ମୋଠାରୁ ଏବଂ ମି: ଆରୋଙ୍କଠାରୁ ମଧ୍ୟ ଗୋପନ ରଖିବା ଉଚିତ୍ । ପ୍ରଥମେ ଏସବୁ କଥାରେ ସମାଧାନ କରନ୍ତୁ । ନଚେତ୍ ମୁଁ ଇସ୍ତଫା ଦେବାକୁ ବାଧ୍ୟହେବି ।"

ଲିଭେସି—ଓଃ ଆପଣ ଚାହାନ୍ତି ଯେ ଆମ୍ଭେମାନେ ସବୁ କଥା ଲୁଚାଇ ରଖିବା ଓ ଜାହାଜ ପଛରେ ଦଳେ ଲୋକଙ୍କୁ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କରି ରଖିବା ଆପଣ ବୋଧହୁଏ ଭୟ କରୁଛନ୍ତି—ହୁଏତ ଗୋଟିଏ ଧରଣର ଗୋଟାଏ ଲଢ଼େଇ ହୋଇପାରେ ।

କାପ୍ତାନ୍—ଦେଖନ୍ତୁ ଆଜ୍ଞା ! ମୁଁ କଣ ଭାବୁଛି ନ ଭାବୁଛି, ସେ ସମ୍ବନ୍ଧରେ ମୁଁ ବର୍ତ୍ତମାନ କିଛି କହିବାକୁ ଚାହେଁନାହିଁ; କିନ୍ତୁ ଆପଣମାନେ ଏଇଟା ତ ବୁଝି ପାରୁଥିବେ ଯେ ମତେ ଯେତେବେଳେ କାପ୍ତାନ୍ ନିଯୁକ୍ତ କରାଯାଇଛି, ସେତେବେଳେ ପ୍ରତ୍ୟେକ ଲୋକର ଜୀବନ ପାଇଁ ମୁଁ ଦାୟୀ । ତେଣୁ ମୁଁ ଏ ବିଷୟରେ ଟିକିଏ ସତର୍କ ରହିବାକୁ କହୁଥିଲି । ତା ଯଦି ନ ହୁଏ; ମୋତେ ଏହି କାର୍ଯ୍ୟ ଛାଡ଼ିଦେବାକୁ ପଡିବ ।

ସ୍କୋୟାର କହି ଉଠିଲେ, "ଆଚ୍ଛା, ଆଚ୍ଛା, ମୁଁ ଏ ବିଷୟରେ ଆଉ କୌଣସି କଥା ଶୁଣିବାକୁ ଚାହେଁ ନାହିଁ । ଆପଣ ଅନର୍ଥକ ଆମ ମନରେ ସନ୍ଦେହ ଜନ୍ମାଇବାର ଚେଷ୍ଟା କରୁଛନ୍ତି । ମୁଁ ଏସବୁ କିଛି ବିଶ୍ୱାସ କରେନାହିଁ ।

କାପ୍ତାନ୍ ତା ନକରି ପାରନ୍ତି, ମୁଁ ସମସ୍ତ ଘଟଣା ଆପଣଙ୍କୁ ଜଣାଇବା ଉଚିତ୍ ଭାବି ଜଣାଇ ଦେଲି ।ବର୍ତ୍ତମାନ ବ୍ୟବସ୍ଥା କରିବାର ଭାର ଆପଣଙ୍କ ହାତରେ । ମୋର କଥା ଶୁଣିବାକୁ ଯେବେ ଖରାପ ଲାଗୁ ନା

କାହିଁକି, ଆପଣମାନେ ମୋର କର୍ତ୍ତବ୍ୟରେ କଦାପି ଅବହେଳା ବା ତ୍ରୁଟି ଦେଖିବେ ନାହିଁ ।"

ଏହା କହି କାପ୍ତାନ୍ ସ୍ମୋଲେଟ ବିଦାୟ ନେଲେ ।

ସେ ଗ୍ଲଲିଯିବା ପରେ ଡାକ୍ତର କହିଲେ, "ଟ୍ରେଲ୍ନି, ତୁମେ ଦୁଇଟି ବିଶ୍ୱସ୍ତ ଲୋକ ଯୋଗାଡ଼ କରିନ୍ତ । ଜଣେ କାପ୍ତାନ୍ ସ୍ମୋଲେଟ, ଅନ୍ୟଟି ଜନ୍ ସିଲଭର ।

ଟ୍ରେଲ୍ନି—"ସିଲଭର ସମ୍ବନ୍ଧରେ ସେ କଥା ଠିକ୍; କିନ୍ତୁ କାପ୍ତାନ୍‌ଟି ସହଜ ଲୋକ ନୁହେଁ, ଘର ଉଦ୍ଧତ, କାପ୍ତାନ୍ ହେବାର ଅନୁପଯୁକ୍ତ ।"

ଡାକ୍ତର କହିଲେ "ଆଚ୍ଛା ଆଚ୍ଛା, କାର୍ଯ୍ୟକ୍ଷେତ୍ରରେ ତାହା ଦେଖାଯିବ ।"

## ଯାତ୍ରା ଆରମ୍ଭ କଲୁ

କାପ୍ତାନ୍‌ଙ୍କ ପରାମର୍ଶ କ୍ରମେ ଜାହାଜର ସବୁ ବନ୍ଦୋବସ୍ତ ହୋଇଗଲା । ଗୋଳାବାରୁଦ ସ୍ଥାନାନ୍ତରିତ କରାଗଲା ।

ଆମ 'ହିସ୍ ପାନିଓଲା' ଜାହାଜଟି ବହୁ କାଂକ୍ଷିତ ରତ୍ନ ଉଦ୍ଦେଶ୍ୟରେ ଛୁଟିଲା । ମୋ ମନରେ ଉଚ୍ଛଳା ଆନନ୍ଦ ।

ସ୍କୋୟାର ଓ କାପ୍ତାନ୍‌ଙ୍କର କୌଣସି ମତେ ମନ ମିଳିଲାନାହିଁ । ମୁଁ ବୁଝିପାରିଲି, ସେ ଦୁଇଜଣ ନିଜ ନିଜ ଭିତରେ ମନଖୋଲି କଥାବାର୍ତ୍ତା କରିପାରୁ ନାହାନ୍ତି ।

ଜାହାଜ ଗ୍ଲଲିବାକୁ ଲାଗିଲା । ମୁଁ ଡେକ୍ ଛାଡ଼ି ଯାଉ ନଥାଏ । ଏହି ଯାତ୍ରା ମୋ ନିକଟରେ ନୂଆ, ତେଣୁ ବେଶ୍ ଉପଭୋଗୀ ଓ ଉତ୍ତେଜନାପୂର୍ଣ୍ଣ । ଏହି ସମୟରେ ସିଲ୍‌ଭର ଓ ତାର ସଙ୍ଗୀମାନେ ଆରମ୍ଭ କରିଦେଲେ ସେହି ପୁରୁଣା ସାମୁଦ୍ରିକ ସଙ୍ଗୀତ ।

ସିନ୍ଦୁକ ଏଇ ମୃତ ମାନବର ଇୟୋ ହୋ ହୋ, ଦୃଷ୍ଟି ତା ଉପରେ ପଞ୍ଚଦଶର, ଇୟୋ, ହୋ, ହୋ, ଢାଳ ଆଉ ଢାଳ ।

ସୁଇ ବୋତଲର ଇପେ୍ସା ହୋ ହୋ,

ସେହି ଉତ୍ତେଜନାପୂର୍ଣ୍ଣ ସମୟରେ ମଧ୍ୟ ମୁହୂର୍ତ୍ତକ ପାଇଁ ଏଡ୍‌-ମିରାଲ ବେନବୋର ଦୃଶ୍ୟ ମୋ ଆଖିରେ ନାଚ ଉଠିଲା । କର୍ମଚାରୀମାନଙ୍କ ସହିତ କାପ୍ତାନ୍‌ର ଗଳା ମଧ୍ୟ ସମସ୍ୱରରେ ଶୁଣାଗଲା । ଏହି ଉଦ୍‌ବେଗ ମଧ୍ୟରେ ସମୁଦ୍ର ମଧ୍ୟରେ କେତେ ଦିନ ଓ କେତେ ରାତି ଯେ କଟିଗଲା, ମୁଁ ତାର ହିସାବ ରଖି ପାରିଲିନାହିଁ । ଏହା ଭିତରେ କୌଣସି ଚମକ-ପ୍ରଦ ଘଟଣା ବି ଘଟିନାହିଁ । ସେହି ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ଉପରେ ନୀଳ ଆକାଶରେ ଖଣ୍ଡ ବାଦଲ ଢେଉ, ତଳ ସମୁଦ୍ରର ନୀଳ ଜଳରେ ଜାହାଜ ଚାଲିବା ଯୋଗେ ଉଠୁଥିବା ଢେଉ । ସମୟ ସମୟରେ ମନରେ ସନ୍ଦେହ ଉପୁଜେ, କେଉଁଟା ସମୁଦ୍ର, କେଉଁଟା ଆକାଶ ?

ମିଷ୍ଟର ଯ୍ୟାରୋଙ୍କର ବ୍ୟବହାର କ୍ରମେ ଅସହ୍ୟ ବୋଧହେଲା । କାପ୍ତାନଙ୍କ କଥା ଯେ କେତେକ ପରିମାଣରେ ସତ ଏହା ମୁଁ ଅନୁମାନ କରିପାରିଲି । ଲୋକଙ୍କ ଉପରେ ତାଙ୍କର କୌଣସି ଆଧିପତ୍ୟ ନଥିଲା । ତାଙ୍କର ଶାସନ ଅଭାବରୁ ଲୋକମାନେ ନିଜର ଇଚ୍ଛାଅନୁସାରେ କାର୍ଯ୍ୟ କରିବାକୁ ଲାଗିଲେ । ପୁଣି ଦିନେ ଦୁଇ ଦିନ ଅନ୍ତରରେ ମି: ଯ୍ୟାରୋ ଆଖି ଲାଲ ଲାଲ କରି ମାତାଲ ପରି ଡେକ୍‌କୁ ଆସନ୍ତି । ସେତେବେଳେ ତାଙ୍କ ଅବସ୍ଥା ଅସହ୍ୟ ବୋଧହୁଏ । ପୁଣି ଦିନକୁ ଦିନ ସେ କର୍ତ୍ତବ୍ୟରେ ସମ୍ପୂର୍ଣ୍ଣ ଅବହେଳା କରିବାକୁ ଲାଗିଲେ । ଦିନ ଦିନ ଧରି କେବଳ ଶୋଇରହନ୍ତି ।

ଏହା ଭିତରେ ସେ ଯେ କେଉଁଠାରୁ ଏତେ ମଦ ଆଣୁଛନ୍ତି, ଆମେ ତାହା ବୁଝିପାରୁ ନ ଥାଉ । ତାଙ୍କୁ ଦିନରାତି ଜଗି ରହିଲେ ବି ଏହି ସମସ୍ୟାର ସମାଧାନ ହୋଇପାରିଲା ନାହିଁ । ତାଙ୍କୁ ପଚାରିଲେ ମଧ୍ୟ କିଛି ଫଳ ନାହିଁ । ମାତାଲ ଅବସ୍ଥାରେ ପଚାରିଲେ ସେ ହସନ୍ତି । ସାଧାରଣ ଅବସ୍ଥାରେ ପଚାରିଲେ ସେ ଦୃଢ଼ଭାବରେ କହନ୍ତି ଯେ ସେ ନରୋଳା ପାଣି ବ୍ୟତୀତ ଅନ୍ୟ କିଛି ପିଅନ୍ତି ନାହିଁ ।

ମି: ପ୍ଲାଭେ ଅଫିସର ହିସାବରେ ଅପଦାର୍ଥ । ସେଥିରେ ପୁଣି ଲୋକମାନଙ୍କର ତାଙ୍କ ପ୍ରତି ଖରାପ ଧାରଣା । ଏଭଳି ପରିସ୍ଥିତିରେ ତାଙ୍କର ଚମତ୍କାର ଅନ୍ତର୍ଦ୍ଧାନ ସମ୍ବନ୍ଧରେ କେହି ଦୁଃଖିତ ବା ଆଶ୍ଚର୍ଯ୍ୟାନ୍ୱିତ ହେଲେନାହିଁ । ଘନ ଅନ୍ଧକାର ରାତିରେ ସେ କେଉଁଆଡ଼େ ଅଦୃଶ୍ୟ ହୋଇଗଲେ । ଯାହାହେଉ କାପ୍ତାନ୍ ଲମ୍ବା ନିଃଶ୍ୱାସଟାଏ ମାରିଲେ ।

ଅଧକ୍ଷ ଜଣଙ୍କର ଆବଶ୍ୟକତା ପଡ଼ିଲା । ଜାହାଜରେ ଜନ୍ ଏଣ୍ଡରସନ ନାମକ ଜଣେ କର୍ମଚାରୀ ଥିଲେ । ତାଙ୍କୁ ତାଙ୍କ କର୍ତ୍ତବ୍ୟରେ ଏହି ଅଧକ୍ଷକାର୍ଯ୍ୟ ଚଳାଇବା ଲାଗି କୁହାଗଲା ।ମିଃ ଟ୍ରିଲ୍‌ନି ଏ କାର୍ଯ୍ୟରେ ଖୁବ୍ ସହାୟତା କଲେ । ଜାହାଜର ତଳିଆ କର୍ମଚାରୀ ଇଜ୍‌ରାଏଲ୍ ହ୍ୟାଣ୍ଡସ୍ ଜଣେ କର୍ମତତ୍ପର, ବିଶ୍ୱସ୍ତ ଓ ଅଭିଜ୍ଞ ଲୋକ । ଅନ୍ୟ କର୍ମଚାରୀମାନେ ଲଂ ଜନ୍ ସିଲଭରକୁ ଭାରି ବିଶ୍ୱାସ କରୁଥିଲେ । ଜାହାଜର ପାଚକ ହିସାବରେ ସମସ୍ତେ ସିଲଭରକୁ ବାରବୁକ ବୋଲି ଡାକନ୍ତି ।

ଜାହାଜର ଜଣେ ତଳିଆ କର୍ମଚାରୀ ଥରେ ମତେ କହିଲେ—ଦେଖ, ଲଂ ଜନର ସିଂହର ସାହସ ଓ ବିକ୍ରମ ଅଛି । ପିଲାଦିନେ ସ୍କୁଲରେ ସେ ଖୁବ୍ ଭଲ ପାଠ ପଢୁଥିଲା । ସେ ଯେଭଳି ଭଲ ପାଠ ମନେରଖେ; ସେପରି ସାହସୀ ଅଟେ ।"

ଜାହାଜର ସମସ୍ତେ ଲଂ ଜନକୁ ସମ୍ମାନ କରୁଥିଲେ ଓ ତାର କଥା ମାନୁଥିଲେ । ସମସ୍ତଙ୍କର ମନ ନେଇ ଚଳିପାରେ । ମୋତେ ଅତ୍ୟନ୍ତ ସ୍ନେହ କରେ । ମୁଁ ରୋଷାଇ ଘରକୁ ଗଲେ ସେ ଖୁସି ହୁଏ । ସେହି ସ୍ଥାନଟିକୁ ସେ ଖୁବ୍ ପରିଷ୍କାର ପରିଚ୍ଛନ୍ନ କରି ରଖିଥାଏ । ଘରର ଗୋଟିଏ ପାଖରେ ପଞ୍ଜୁରୀରେ ତାର ଅତି ପ୍ରିୟ ଶୁଆଟି ସବୁ ସମୟରେ ଝୁଲୁଥାଏ ।

ଜନ୍ ମତେ ଆଦର କରି ଡାକେ. ଆସ, ଆସ ଜିମ୍ ! ବୁଢ଼ା ଜାନ୍‌କୁ ସାହାଯ୍ୟ କର ବାପା ! ବସ ! ଖବର ଶୁଣ; ହେଉଛି ମୋର କାପ୍‌ଟେନ ଫ୍ଲିଣ୍ଟ । ମୁଁ ମୋର ଶୁଆର ନାମ କାପ୍‌ଟାନ ଫ୍ଲିଣ୍ଟ୍ (ସେହି ବିଖ୍ୟାତ ଜଳଦସ୍ୟୁର ନାମ) ରଖିଛି । ଏହି କାପଟାନ୍ ଫ୍ଲିଣ୍ଟ୍ ଆମର ଯାତ୍ରାକୁ ସଫଳ କରିବ । "ତତ୍ପରେ ସେ ଶୁଆକୁ ଗ୍ଭହିଁ ଆଦରରେ କହେ, କଣ କାପ୍‌ଟେନ୍ ସାହାଯ୍ୟ କରିବ ନ ?"

ତତ୍‌କ୍ଷଣାତ୍ ଶୁଆଟି ଉତ୍ତର ଦିଏ—"ଆଠ ଖଣ୍ଡି; ଆଠ ଖଣ୍ଡି ।" ଜନ ତା' ପିଞ୍ଜରାରେ ରୁମାଲ ପକାଇବା ପର୍ଯ୍ୟନ୍ତ ସେ ଅନବରତ ଏହା କହି ଚାଲିଥାଏ । ଜନ ସିଲ୍‌ଭର କହେ—"ପକ୍ଷୀଟିର ବୟସ ଦୁଇଶହ ବର୍ଷ ହେଲାଣି । କମ୍ ଏ ଇଂଲଣ୍ଡର କାପଟେନ ଫ୍ଲିଣ୍ଟ ବିଖ୍ୟାତ ଜଳଦସ୍ୟୁ ସଙ୍ଗେ ବହୁ ସ୍ଥାନ ବୁଲିଛି । ସେ ମାଡ଼ାଗାସ୍କାର ଓ ମାଲବାର ଯାଇଛି । ସେଇଠୁ ସେ 'ଆଠଖଣ୍ଡି' ଶିଖିଛି । ସେ ମତେ ସବୁକଥା କହେ ।"

ଜନର ସ୍ନେହ ଓ ଶ୍ରଦ୍ଧାରେ ମୁଁ ଏକାବେଳେ ଅଭିଭୂତ ହୋଇଗଲି; ମାତ୍ର ତା ପଟେ ଭିତରେ ଯେ ଏତେ କଥା, ତାହା ମୁଁ ବୁଝିପାରିନଥିଲି । ଯେତେବେଳେ ପ୍ରକୃତ ପରିଚୟ ପାଇଲି, ସେତେ-ବେଳେ ଜାଣିଲି ଯେ, ଅମୃତ ସହିତ ହଳାହଳ ବିଷ ମିଶିଛି ।

ଏଣେ କାପ୍ତାନ୍ ଆଉ ସ୍କୋୟାରଙ୍କ କୌଣସି ମତେ ମନ ମେଳ ହେଉନାହିଁ । ଜାହାଜ ଚାଲିବାକୁ ଲାଗିଲା । ଆମ ଲକ୍ଷ୍ୟସ୍ଥଳର ଖୁବ୍ ନିକଟକୁ ଆସିଗଲୁଣି । ରାତି ପାହିଲେ ରତ୍ନଦ୍ୱୀପ ଦେଖାଯିବ । ସମସ୍ତଙ୍କର ଖୁବ୍ ଆନନ୍ଦ । ମୋ କଥା ଆଉ ଦେଖେ କିଏ ? ମୁଁ ଆନନ୍ଦରେ ଜାହାଜ ସାରା ଘରି ବୁଲୁଥାଏ । କିଛି ସମୟ ବୁଲାବୁଲି କରି ମୋ କୋଠରୀରେ ଫଳ ଖାଇବାକୁ ପଶିଲି । ଏହି ସମୟରେ ପାଖ କୋଠରୀରୁ ଗୋଟାଏ କଥଣ ଗୋଳମାଳ ଶୁଣାଗଲା । ସିଲ୍‌ଭରର ସ୍ୱର ମୁଁ ପରିଷ୍କାର ଶୁଣି-ପାରିଲି । ମୁଁ କିଛି ସମୟ କାନଡେରି ଯାହା ଶୁଣିଲି, ସେଥିରେ ଭୟରେ ମୋର ଦେହ ହାତ ଥରିବାକୁ ଲାଗିଲା ।

ସିଲଭର ଜନ କହୁଛି, "ନା—ନା ମୁଁ ନୁହେଁ, ମୁଁ ନୁହେଁ; ନିଜେ ଫ୍ଲିଣ୍ଟ କାପ୍ତାନ୍ ଥିଲା । ମୁଁ ଜାହାଜରେ ସାମାନ୍ୟ କର୍ମଚାରୀ ଥିଲି । ଏଇ ଜାହାଜରେ ଥିଲାବେଳେ ମୋର ଗୋଟିଏ ଗୋଡ଼ ଗଲା । ସେହିଦିନୁ ଏହି କାଠଗୋଡ଼ ଲଗାଇଛି, ପିଉ ମଧ୍ୟ ଏହିପରି ଆଖି ହରାଇଲା ।

ଆଉ ଜଣେ କହିଲା, "ଫ୍ଲିଣ୍ଟ ଭାରି ସାହସୀ ଥିଲା । ଜାହାଜରେ ତା ପରି ଆଉ ଜଣେ କେହି ନ ଥିଲେ ।

ସିଲ୍‌ଭର ସ୍ୱର ପୁଣି ଶୁଣାଗଲା —ଡେଭିସ୍ ମଧ୍ୟ ସେମିତି ଜବରଦସ୍ତ ଲୋକ ଥିଲା। ମୁଁ ଫ୍ଲିଣ୍ଟ ସଙ୍ଗେ ଯେମିତି ଜାହାଜ ଲୁଟିବାକୁ ଯାଇଛି, ଡେଭିସ୍‌ଙ୍କ ସଙ୍ଗେ ମଧ୍ୟ ସେହିପରି ଯାଇଛି। କେହି କାହାକୁ ଊଣା ନୁହନ୍ତି। ଫ୍ଲିଣ୍ଟର ପ୍ରଚୁର ଟଙ୍କା ଥିଲା। ସେ ସମସ୍ତ ଏଣେତେଣେ ନାନା ଦ୍ୱୀପରେ ପୋତାହୋଇଛି। ଆମ ଜାହାଜରେ କଏ ଫ୍ଲିଣ୍ଟକୁ କଏ ବା ପିଉକୁ ବେଶି ଭୟ କରୁଥିଲେ; କିନ୍ତୁ ମୁଁ କାହାକୁ ଭୟ କରେନାହିଁ। ବରଂ ପିଉ ଓ ଫ୍ଲିଣ୍ଟ ମତେ ଭୟକରନ୍ତି।

ବୁଝିବାକୁ ବଳମ୍ବ ହେଲନାହିଁ ଯେ ଏମାନେ ସବୁ ଜଳଦସ୍ୟୁ। ଭୟରେ ମୋ ଦେହ କମ୍ପିବାକୁ ଲାଗିଲା।

ସେମାନେ ପୁଣି କଥା ଆରମ୍ଭକଲେ। ସିଲ୍‌ଭର କହିଲା ମନେ-ରଖ, କାପ୍ତାନ୍ ଭାରି ସାବଧାନ ଲୋକ। ଫ୍ଲିଣ୍ଟର ଗୁପ୍ତ ସ୍କୋୟାର ବା ଲଭେସି ଦୁହିଙ୍କ ମଧ୍ୟରୁ ଜଣକ ପାଖରେ ଅଛି, ବୁଝିଲ? ଖୁବ୍ ସାବଧାନ। ମାନଚିତ୍ର କେଉଁଠି ଅଛି ଜାଣେନାହିଁ। ସେ କଥା ଦେଖିବା। ସେଥିପାଇଁ କାମ କିଛି ଅଟକିଯିବ ନାହିଁ। ପ୍ରଥମେ ସୁବିଧା ଦେଖି ଏମାନଙ୍କୁ ଖସାଇ-ବାକୁ ହେବ।"

ମୁଁ ବୁଝିପାରିଲି, ଆମର ପ୍ରାଣ ହାନିର ଚେଷ୍ଟା ଚାଲିଛି। ଭୟରେ ମୋର ଛାତି ଧଡ୍ ଧଡ୍ ହେଲା।

କୁହୁଡ଼ିର ଝାପ୍‌ସା ଅନ୍ଧକାର ମଧ୍ୟରେ ବାଟ କାଟି ଆମ ଜାହାଜ ଆସୁଥାଏ। ସହସା ଆକାଶ ପରିଷ୍କାର ହୋଇଯିବାରୁ ଦକ୍ଷିଣ ପଶ୍ଚିମ ଦିଗରେ ଦୁଇଟା ଛୋଟ ଛୋଟ ପାହାଡ଼ ଦୃଷ୍ଟିଗୋଚର ହେଲା। ତା ପଛରେ ଆଉ ଗୋଟିଏ ବଡ଼ ପାହାଡ଼। ତା ଉପରେ ଘନ କୁହୁଡ଼ି ଲୁଚକାଳି ଖେଳୁଥାଏ।

କାପ୍‌ଟେନ୍ ପଚାରିଲେ। ଆଗରେ ଯେଉଁ ଦେଶ ଦେଖାଯାଉଛି, ସେ ଦେଶ କ'ଣ ତୁମ ଭିତରୁ କେହି ଆଗରୁ ଦେଖିଛ?

ସିଲଭର କହିଲା—ମୁଁ ଦେଖିଛି। ମୁଁ ଥରେ ଗୋଟିଏ ସଉଦା-ଗରର ଜାହାଜରେ ସେଠାକୁ ଯାଇଥିଲି। ସେ ଜାହାଜରେ ମୁଁ ରୋଷେଇ କରୁଥାଏ।

କାପ୍ଟେନ୍— ମୋର ମନେହୁଏ ତାହାର ଦକ୍ଷିଣ ଦିଗରେ ଗୋଟିଏ ଦ୍ୱୀପ ଅଛି । ପଚ୍ଛରେ ଜାହାଜ ଲଙ୍ଗର ପକାଇବାକୁ ହେବ । ସେ ଜାଗା ଜାହାଜ ରଖିବା ପକ୍ଷରେ ଭଲ ।

ସିଲ୍‌ଭର୍—ହଁ ଆଜ୍ଞା, ଏ ଦ୍ୱୀପକୁ ସମସ୍ତେ ସ୍କେଲିଟନ ଦ୍ୱୀପ କହନ୍ତି । ପୂର୍ବେ ଏ ଦ୍ୱୀପ ଦସ୍ୟୁମାନଙ୍କ କବଳରେ ଥିଲା । ଉତ୍ତର ଦିଗରେ ଦେଖାଯାଉଥିବା ପାହାଡ଼ର ନାମ ଫୋରମାଷ୍ଟ ପାହାଡ଼ । ଦକ୍ଷିଣଦିଗରେ ଗୋଟିକ ପରେ ଗୋଟିଏ ହୋଇ ତିନୋଟି ପାହାଡ଼ ଅଛି । ମଝି ପାହାଡ଼ଟି ସବୁଠାରୁ ବଡ଼; ତା ମୁଣ୍ଡ ମେଘରେ ଢାଙ୍କିହୋଇ ରହିଛି । ତାକୁ ସମସ୍ତେ ସ୍ପାଇଗ୍ଲାସ କହନ୍ତି ।

କାପ୍ଟେନ କହିଲେ—ମୋ ପାଖରେ ଗୋଟିଏ ମାନଚିତ୍ର ଅଛି । ଦେଖିଲ—ଆମ୍ଭେମାନେ ଯାହା ଭାବୁଛୁ, ତାହା ଠିକ୍ କି ନୁହେଁ ?

ମାନଚିତ୍ରକୁ ହାତରେ ଧରିବା ସଙ୍ଗେ ସଙ୍ଗେ ଜନ୍‌ର ଆଖି ଭିତରେ ଲାଲ ହୋଇଗଲା । କାପଟେନ୍ ବିଲର ସିନ୍ଦୁକରେ ଯେଉଁ ମାନଚିତ୍ର ଥିଲା, ଏଇଟା ତାର ନକଲ । ଏଥିରେ ସବୁ ଅଛି, ଖାଲି ନାଲି କାଳିର ଦାଗ ଓ ଗାରଗୁଡ଼ିକ ନାହିଁ । ଜନ୍ ମନେ ମନେ ବିରକ୍ତହୋଇ ଉଠିଲା; ମାତ୍ର ଧୈର୍ଯ୍ୟସହକାରେ ଠିଆହୋଇ ରହିଲା । କିଛିକ୍ଷଣ ମାନଚିତ୍ରକୁ ଦେଖି କହିଲା—ହଁ, ଏହି ସ୍ଥାନ କି ସୁନ୍ଦର ଅଙ୍କା ହୋଇଛି । ଏହି ସ୍ଥାନର ନାଁ କିଡ୍ । ଏଇଠି ଜାହାଜ ଲଙ୍ଗର ପକାଇବାକୁ ସୁବିଧା ହେବ ।

କାପ୍ଟେନ କହିଲେ—ଆଚ୍ଛା ବେଶ୍, ଧନ୍ୟବାଦ, ଏବେ ଯାଅ ! ଦରକାର ହେଲେ ସାହାଯ୍ୟ କରିବାକୁ ତୁମକୁ ଡାକରା ପଡ଼ିବ ।

ଜନ୍ ମୋ ପାଖକୁ ଫେରିଆସିବା ଦେଖି ମୋତେ ଭାରି ଭୟ ଲାଗିଲା । ମୁଁ ତାର ସବୁ କଥା ଶୁଣିଛି ବୋଲି ସେ ଆଦୌ ଜାଣି ନ ଥାଏ ମୋ ପାଖକୁ ଆସି ସେ କହିଲା ଦ୍ୱୀପଟି ଭାରି ସୁନ୍ଦର । ପିଲାଙ୍କପାଇଁ ବେଶ୍ ଆମୋଦପ୍ରଦ । ତୁମେ ମନ ଆନନ୍ଦରେ ସେଠାରେ ପହଁରିବାର ସୁବିଧା ପାଇବ । ବଣ, ଘଞ୍ଚବନ ଗଛରେ ଚଢ଼ି ଖେଳିବ, ଶିକାର କରିବ । ମନ ମଉଜରେ ପାହାଡ଼ର ତଳ ଉପର ସବୁ ବୁଲିବ । ଦ୍ୱୀପ ଭିତର ଦେଖି ମୋର ମନ ହେଉଛି, ମୁଁ ଯଦି ପିଲାଟିଏ ହୋଇ ଯାଆନ୍ତି

କେତେ ମଜା ନ ହୁଅନ୍ତା । ମୁଁ ଯେ ଗ୍ଲେଷ୍ଟା, ସେ କଥା ଭୁଲି ଗଲିଣି । ତୁମର ଭାରି ମଜା ହେବ ।

ଏହା କହି ଆଦର କରି ସେ ମୋ ପିଠି ଥାପୁଡ଼ାଇଲେ ।

ସେ ଗୃହରୁ ପରେ କାପ୍ଟେନ୍, ଡାକ୍ତର ଲିଭେସି ଓ ସ୍କୋୟାର ତ୍ରିଲାନିଙ୍କ ପାଖକୁ ଯାଇ ମୁଁ ଯାହା ଶୁଣିଥିଲି ସବୁ କଥା ଗୋଟି ଗୋଟି କରି କହିଲି । ଡାକ୍ତର ଲିଭେସି କହିଲେ—ନା, ତୁମେ ଜାଣନାହିଁ । ସିଲ୍ଭର ଭାରି ଭଲ ଲୋକ, ତାକୁ ଅବିଶ୍ୱାସ କରିବାର କିଛି କାରଣ ନାହିଁ ।

କିନ୍ତୁ କାପ୍ଟେନ୍ କହିଲେ, "ଆପଣମାନେ କେହି ସିଲ୍ଭରକୁ ଜାଣନ୍ତି ନାହିଁ । ପ୍ରଥମ କଥା ଆମକୁ ଅଗ୍ରସର ହେବାକୁ ପଡ଼ିବ । ପଛଘୁଞ୍ଚା ହେବା ଅଶୋଭନୀୟ । ଏ ପ୍ରକାର ହୁକୁମ ଦେଲେ ସେମାନେ ଆମକୁ ଗୁଳିକରି ମାରିଦେବେ । ଦ୍ୱିତୀୟ କଥା ଏବେ ମଧ୍ୟ ବେଳ ଅଛି । ଯେତେବେଳଯାଏଁ ରତ୍ନର ସନ୍ଧାନ ନ ମିଳିଛି, ସେ ପର୍ଯ୍ୟନ୍ତ ଆମର କୌଣସି ଭୟ ନାହିଁ । ତୃତୀୟ କଥା, ଆମ ଦଳରେ କେତେ ଜଣ ବିଶ୍ୱସ୍ତ ଲୋକ ଅଛନ୍ତି ? କଥାହେଉଛି ଯେ ହଣାମରା ନିଶ୍ଚୟ ହେବ । ତେଣୁ ଆମକୁ ସାବଧାନତାର ସହିତ ଚଳିବାକୁ ହେବ । ଆମଦଳରେ ତ ଜମା ଛଅ ଜଣ । ଆଉ ସବୁ କାହାନ୍ତି ? ହାଣ୍ଟରକୁ ମିଶାଇଲେ ଆମ୍ଭେ ସାତ ଜଣ ହେବା ।

ଡାକ୍ତର ମୋ ମୁହଁକୁ ଚାହିଁ କହିଲେ, "ଜୀମ୍ ପିଲା ସତ, ମାତ୍ର ସେ ବଡ଼ ହୁସିଆର । ତା'ଦ୍ୱାରା ବହୁତ କାମ ହୋଇପାରିବ । ଆମ ଅପେକ୍ଷା ତା ଆଖି ବେଶି ଆଡ଼େ ବୁଲୁଛି, ସମସ୍ତଙ୍କର ମଧ୍ୟ ସେ ପ୍ରିୟପାତ୍ର ହୋଇଯାଇଛି ।

ମୁଁ ଏସବୁ କଥା ଶୁଣିଯାଉଥାଏ ମାତ୍ର । ମୋ ମନରେ ଖେଳୁଥାଏ, ଆମେ ବୋଧହୁଏ ଏହି ନିର୍ଜନ ସମୁଦ୍ର ମଧ୍ୟରେ ହିଁ ପ୍ରାଣ ଦେବୁ । ଯାହାକୁ ଆମ ସପକ୍ଷରେ ବୋଲି ଭାବୁଛୁ, ସେମାନେ ସଂଖ୍ୟାରେ ୧୯ ଜଣ । ଆମେ ତ କେବଳ ସାତ । ଏହି କଥା ଭାବି ମୋର ପିଲାମନ ଟିକିଏ ଦବିଗଲା । ଏତେବେଳେ କେବଳ ମାଆଙ୍କ ମୁହଁ ଆଖିଆଗରେ ନାଚିଲା, ତାଙ୍କ ସ୍ନେହପୂର୍ଣ୍ଣ କଥା କାନକୁ ଶୁଣାଗଲା ।

## ଶ୍ୱାପଦ ଘନେଇ ଆସିଲା

ଦ୍ୱୀପଟି ଦୃଷ୍ଟିଗୋଚର ହେବାମାତ୍ରେ ସମସ୍ତେ କାମରେ ଢ଼ିଲକଲେ ଏବଂ ଯେ ଯାହା ମନଖୁସିରେ କାମକରିବାକୁ ଲାଗିଲେ । ସେ ଯାହାହେଉ ମାନଚିତ୍ର ଅନୁସାରେ ଆମେ ଯଥାସ୍ଥାନରେ ଲଙ୍ଗର୍ ପକାଇଲୁ । ସେତେବେଳକୁ ବେଳ ବୁଡ଼ିଆସୁଥାଏ । କ୍ୟାପ୍‌ଟେନ୍ କହିଲେ, ଯାଅ, ତୁମେ ସବୁ ବୁଲିଆସ । ସୂର୍ଯ୍ୟ ବୁଡ଼ିବାର ଅଧଘଣ୍ଟା ପୂର୍ବରୁ ମୁଁ ବନ୍ଧୁକ ଫୁଟାଇବି, ସେତେବେଳକୁ ତୁମେମାନେ ଫେରିଆସିବ ।

ସିଲ୍‌ଭର ଠିକ୍‌କଲା ଯେ ସେ ତା ଦଳର ଛଅଜଣଙ୍କୁ ଜାହାଜରେ ରଖି ଅବଶିଷ୍ଟ ତେର ଜଣଙ୍କୁ ନେଇ ବୁଲିବାକୁ ଯିବ । ଏହା ଶୁଣି ମୁଁ ଟିକିଏ ଆଶ୍ୱସ୍ତ ହେଲି । ଭାବିଲି, ଆଜି ମାଡ଼ଗୋଳ ହୋଇପାରିବ ନାହିଁ । ତେଣୁ କାହାରିକୁ ନଜଣାଇ ଚୁପଚାପ ବୁଲିବାପାଇଁ ବାହାରି ପଡ଼ିଲି; କିନ୍ତୁ ଗଲାବେଳେ ସିଲଭର ମୋତେ ଦେଖିନେଲା । ସେଠାରୁ ଦ୍ୱୀପ ପ୍ରାୟ ଅଧମାଇଲ ବାଟ ହେବ । ତିନି ଗୁଡ଼ିଏ ଡଙ୍ଗାରେ ବସି ଆମେ କୂଳକୁ ଗଲୁ । ମୁଁ ଯେଉଁ ଡଙ୍ଗାରେଥିଲି ସେଥିରେ ଭାରି ହାଲୁକା ଥିବାରୁ ଆମେ ଆଗ କୂଳରେ ପହଞ୍ଚିଲୁ । ଡଙ୍ଗା କୂଳରେ ଲାଗିବା ପୂର୍ବରୁ ମୁଁ ଗଛର ଗଣ୍ଡିଟିଏ ଧରି ଦ୍ୱୀପରେ ଓହ୍ଲାଇପଡ଼ି ମନ ମଉଜରେ ଏଣେ ତେଣେ ଧାଇଁବାରେ ଲାଗିଲି । ସିଲ୍‌ଭର ମୋତେ ପଛରୁ ଡାକିଲା ଜିମ୍—ଜିମ୍ ! ମାତ୍ର ମୁଁ ନ ଶୁଣିଲାଭଳି ଆଗକୁ ଯିବାକୁ ଲାଗିଲି ।

କିଛିବାଟ ପଳାଇ ଯିବା ପରେ ମନରେ ଟିକିଏ ଦମ୍ଭ ଆସିଲା । ମୁଁ ସେତେବେଳକୁ ଲଙ୍ଗଜନ୍ ହାତରୁ ଖସି ବହୁତ ବାଟ ପଳାଇ ଯାଇଥାଏଁ । ଭାବିଲି ଏଥର ମୋତେ ଆଉ କିଏ ଧରିବ ? ତେଣୁ ସ୍ୱାଧୀନ ଭାବରେ, ମନଖୁସିରେ ବଣଭିତରେ ବୁଲିବାକୁ ଲାଗିଲି ।

ଦ୍ୱୀପଟି ଭାରି ନିର୍ଜ୍ଜନ । କେହି କୁଆଡ଼େ ନ ଥାନ୍ତି । କେତେପ୍ରକାର ଗଛରେ ଗ୍ଲେଟ ବଡ଼ ରଙ୍ଗ, ବେରଙ୍ଗର ନାନା ଜାତି ଫୁଲ ଫୁଟିଥାଏ । ନୂଆ ଚଢ଼େଇ ଗୀତ ଗାଉଥାଆନ୍ତି । ଏ ସବୁ ଦେଖି ମୋ ମନ ଆନନ୍ଦରେ

ପୂର୍ବ ଉଠୁଥାଏ । ଏହି ସମୟରେ ହଠାତ୍ ମନୁଷ୍ୟର ସ୍ୱର ଶୁଣାଗଲା । ମୁଁ ବୁଦାଭିତରେ ଲୁଚିଗଲି । ଟିକିଏ ପରେ ଦେଖିଲି ଯେ ଟମ ଓ ସିଲ୍‌ଭର କଳି କରୁଛନ୍ତି । ଟମ୍ କହୁଥାଏ—ତୁମେ ଏଲେନ୍‌କୁ ହତ୍ୟା କରିଛ । ସିଲ୍‌ଭର ମୁଁ ଆଜଯାଏ ତୁମ ସଙ୍ଗେ ବନ୍ଧୁପରି ଚଳିଆସିଲି, କିନ୍ତୁ ଆଜିଠାରୁ ମୁଁ ଆଉ ତୁମର ବନ୍ଧୁ ନୁହେଁ । ତୁମେ ଏଲେନ୍‌କୁ ହତ୍ୟା କରିଛ ବୋଲି କଣ ମୋତେ ହତ୍ୟା କରିବ ? ଆଚ୍ଛା ବେଶ୍, ଦେଖାଯାଉ ! ଏହା କହି ଟମ୍ ଜାହାଜଆଡ଼କୁ ଯିବାକୁ ବାହାରିଛି, ସିଲ୍‌ଭର ଗଛରୁ ଡ଼ାଳଟାଏ ଭାଙ୍ଗି ଆଣି ଟମ୍ ପିଠିରେ ଏପରି ପାହାରେ ଦେଲା ଯେ ସେ ଭୂଇଁରେ ପଡ଼ିଗଲା । ସିଲ୍‌ଭର ଛୁରୀ ବାହାରକରି ତା ଗୁନ୍ତରେ ଭୁଷିଦେଇ ବିକଟ ହସ ହସିବାକୁ ଲାଗିଲା । ତା'ପରେ ପକେଟରେ ହାତ ପୂରାଇ ଠିଆହୋଇ ରହିଲା । ଆଗରେ ଟମ୍‌ର ମୃତଦେହ ପଡ଼ିଥାଏ । କିଛି ସମୟ ପରେ ସେ ପକେଟରୁ ବଂଶୀଟିଏ ବାହାର କରି ତାକୁ ନାନା ଭାବରେ ବଜାଇବାକୁ ଲାଗିଲା । ତାର ଅର୍ଥ ନ ବୁଝିଲେ କ'ଣ ହେବ ଏସବୁ ଦେଖି ମୋତେ ଭାରି ଭୟ ଲାଗୁଥାଏ । ମୁଁ ଅଧିକକାଳ ଲୁଚି ନ ରହି ପଳାଇ ଯିବାକୁ ଲାଗିଲି । ହୁଏତ ବଂଶୀ ଶବ୍ଦ ଶୁଣି ତା' ଲୋକମାନେ ଆସି ମୋତେ ଯେ ନ ଧରିବେ କିଏ ଜାଣେ ?

ଏହି ସମୟରେ ଜାହାଜରୁ କ୍ୟାପଟେନଙ୍କ ବନ୍ଧୁକ ଶବ୍ଦ ଶୁଣାଗଲା । ମୁଁ ଠିକ୍ କଲି ଆଉ ଜାହାଜକୁ ଯିବିନାହିଁ । କାରଣ ମୋର ମନେହେଲା ଯେ ଜାହାଜକୁ ଗଲେ ବୋଧହୁଏ ସିଲ୍‌ଭର ଏଥର ମୋତେ ହତ୍ୟାକରିବ । ଏଲେନ୍‌କୁ ହତ୍ୟାକରିଛି—ଟମ୍‌କୁ ମୋ ଆଖିଆଗରେ ଖୁନ୍ କଲା; ମୋ ଗୁନ୍ତରେ ଯେ କେତେବେଳେ ଛୁରୀ ବସାଇଦେବ, କିଏ ଜାଣେ ? ଜାହାଜର ଏହି ଭୟଙ୍କର ଲୋକଟା ସଙ୍ଗେ ରହିବା ଅପେକ୍ଷା ବଣରେ ନ ଖାଇ ମରିବା ଶ୍ରେୟସ୍କର ମନେକରି ମନେ ମନେ ଡାକ୍ତର, ସ୍କୋୟାର ଓ କ୍ୟାପ୍‌ଟେନଙ୍କଠାରୁ ବିଦାୟ ନେଲି । ତା' ପରେ ସିଲ୍‌ଭର ଭୟରେ ବଗଡ଼ବଗ ଭଳି କେବଳ ଛୁଟିବାରେ ଲାଗିଲି । ଅନେକ ସମୟ ଦୌଡ଼ିବା ପରେ ଗୋଟିଏ ପାହାଡ଼ ତଳେ ପହଞ୍ଚିଲି । ଚାରିଆଡ଼େ ଓକ୍ ଗଛର ଜଙ୍ଗଲ । ହାଲିଆହୋଇ ସେଇଠି ବିଶ୍ରାମ କରିବାକୁ ବସିପଡ଼ିଲି ।

କିଛି ସମୟ ବିଶ୍ରାମ ପରେ ଉଠିବାକୁ ଯାଉଛି, ସହସା ପାହାଡ଼ ଉପରୁ ଏକ ପ୍ରକାଣ୍ଡ ପଥର ଗଡ଼ ଗଡ଼ ଶବ୍ଦରେ ତଳକୁ ଖସି ଆସିଲା । ମୁଁ ଆଗକୁ ଚାହିଁ ଦେଏତ—ଦେଖିଲି ଗୋଟିଏ କିମ୍ଭୂତ କିମ୍ଭାକାର ଜୀବ । ସେ ମଣିଷ, କି ଭାଲୁ, କି ମାଙ୍କଡ଼ କିଛି ଜାଣିପାରିଲି ନାହିଁ । ଦେବଦାରୁ ବଣ ଭିତରେ ଭୟଙ୍କର ବେଗରେ ନାଚୁଥାଏ । ତା ଦେହରେ ଭୟଙ୍କର କଳାକଳା ବଡ଼ ବଡ଼ ଲୋମ । ତାକୁ ଦେଖି ମୁଁ ସ୍ଥିର ହୋଇ ଠିଆ ହୋଇଗଲି । ମୋର ଦୁଇଆଡ଼େ ବିପଦ । ଆଗରେ ଭୟଙ୍କର ଜନ୍ତୁ—ପଛରେ ହତାଶାଭରା ବନ । କିନ୍ତୁ ସିଲ୍‌ଭରର ଡର ଏ ଜନ୍ତୁକୁ ଦେଖି ଟିକିଏ କମିଗଲା । ମୁଁ ପଛକୁ ଧାଇଁବାକୁ ଲାଗିଲି । ହୁଏତ କୌଣସି ପ୍ରକାରେ ଜାହାଜରେ ପହଞ୍ଚିଗଲେ ରକ୍ଷା । ମନ ପ୍ରାଣ ଦେଇ ଧାଇଁ ଧାଇଁ କିଛି ବାଟ ଗଲାପରେ ପଛକୁ ଚାହିଁ ଦେଖେତ ସେ ଜନ୍ତୁଟା ଖୁବ୍ ବେଗରେ ମୋ ଆଡ଼କୁ ଆସୁଛି । ତାର ତ୍ୱରା ଆଉ ଦୌଡ଼ ଦେଖେ କିଏ ? ତାକୁ ଟପାଇ ଚାଲିଯିବାକୁ ମୋର ବା ସାଧ୍ୟ କାହିଁ ? ସେ ମଣିଷ ପରି ଦୁଇ ଗୋଡ଼ରେ ଭରଦେଇ ଧାଉଁଥାଏ, ପୁଣି ଯେତେବେଳେ ନଇଁ ପଡ଼ୁଥାଏ, ସେତେବେଳେ ଜନ୍ତୁପରି ଦିଶେ । ମଣିଷଖିଆ ରାକ୍ଷସ କଥା ଶୁଣିଥିଲି—ଏବେ ଆଖିରେ ଦେଖିଲି ବୋଲି ମନେହେଲା । ମୁଁ ଭାବନାରେ ପଡ଼ିଗଲି । ସହସା ମୋର ମନେ ପଡ଼ିଲା ମୋ ପାଖରେ ପିସ୍ତଲ ଅଛି । ମୁଁ ପିସ୍ତଲଟା ହାତରେ ଧରି ତା ଆଡ଼କୁ ଗଲି ।

ମୋ ହାତରେ ପିସ୍ତଲ ଦେଖି ସେ ଟିକିଏ ପଛକୁ ଘୁଞ୍ଚିଗଲା । ପୁଣି ମୋ ଆଗରେ ଆଣ୍ଠୁମାଡ଼ି ପ୍ରାର୍ଥନା କଲାଭଳି ଆତୁର ଭାବରେ ଚାହିଁ ରହିଲା । ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ପଚାରିଲି ତୁମେ କିଏ ? ସେ କର୍କଶ ଓ ବିକୃତ ସ୍ୱରରେ ଉତ୍ତର ଦେଲା ବେନଗନ—ବେନଗନ । ତିନବର୍ଷ କାଳ ଏ ଦ୍ୱୀପରେ ମୁଁ ଏକା ଅଛି । ମଣିଷ ମୁହଁ ଦେଖିନାହିଁ । ମୁଁ ତା ନିକଟକୁ ଯାଇ ଦେଖିଲି ଯେ, ସେ ସତକୁ ସତ ଆମପରି ମଣିଷ । ପ୍ରଚଣ୍ଡ ତାତିରେ ତା ଦେହ କଳାପଡ଼ି ଯାଇଛି । ସେ ମେଣ୍ଢା ଚମଡ଼ା ପିନ୍ଧିଥାଏ । ତାକୁ ଦେଖି ମୋତେ ବଡ଼ ଦୁଃଖ ଲାଗିଲା । କହିଲି, "ତିନ ବର୍ଷ ହେଲା ଏ ଦ୍ୱୀପରେ ଏକା ଅଛ ? ଜାହାଜ ବୁଡ଼ିଯିବାରୁ କଣ ଭାସି ଆସିଲ ?"

# ବେନ୍‌ଗାନ

ବେନଗାନ୍ ଦୁଇହାତ ଯୋଡ଼ି ବ୍ୟାକୁଳ କଣ୍ଠରେ କହିଲା—ମୁଁ ଡକାୟତ ନୁହେଁ, ଦସ୍ୟୁ ନୁହେଁ । ମୋତେ ଦ୍ୱୀପାନ୍ତର ଦଣ୍ଡ ଦିଆଯାଇଛି । ତିନବର୍ଷ ବିତିଗଲାଣି ମୁଁ ଏକୁଟିଆ ଏଠାରେ ରହୁଛି ।

ଏ ତିନିବର୍ଷ ମୋର ଅତି କଷ୍ଟରେ କଟିଛି । ଅବଶ୍ୟ ମୋତେ ଅନାହାର ବାଧି ନାହିଁ । ଏଠାରେ ଜୀବଜନ୍ତୁ ଅନେକ । ସେମାନଙ୍କ ମାଂସ, ସମୁଦ୍ରର ଶାମୁକା, ଗଛର ଫଳ ମୋର ଜୀବନ ରଖିଛି । ଗଲା ତିନବର୍ଷ ହେଲା ଏହା ହିଁ ତ ମୋର ଆହାର ହୋଇ ଆସିଛି । ଏହାକୁ ଖାଇଖାଇ ପାଟି ଅରୁଚି ଧରିଲାଣି । ରୁଟି ଆଉ କେକ୍ ଖାଇବାକୁ ମୋର ପ୍ରବଳ ଇଚ୍ଛା । କେତେକେତେବେଳେ ରୋଟି ଓ କେକ୍‌ର ସ୍ୱପ୍ନ ଦେଖି ମୁଁ ନିଦରୁ ଉଠିପଡ଼େ; କିନ୍ତୁ କେବେ ମୋର କପାଳରେ ତାହା ଜୁଟିଲାନାହିଁ । ଆଚ୍ଛା ଭାଇ; ତୁମ ପାଖରେ ରୋଟି କି ବିସ୍କୁଟ କିଛି ଅଛିକି ?

'ନା ମୋ ପାଖରେ ସେ ସବୁ କିଛିନାହିଁ । ଯଦି ଜାହାଜକୁ ମୁଁ ଫେରି ଯାଏ, ତେବେ ତୁମକୁ ପେଟପୂରା ଖାଇବାକୁ ଦେବି ।

"ଯଦି ଜାହାଜକୁ ଫେରିଯାଏ ! ଏପରିକଥା କହୁଛ କାହିଁକି । ଜାହାଜକୁ ଫେରିବାକୁ ତୁମକୁ କିଏ ସେ ବାଧାଦେବ ?"

"ଅବଶ୍ୟ ତୁମେ ବାଧା ଦେବନାହିଁ; ଏ କଥା ମୁଁ ନିଶ୍ଚିତ ଜାଣେ ।"

"ଠିକ୍ କହୁଛ, ଆଚ୍ଛା ଭାଇ, ତୁମ ନାମ କଣ ?"

"ଜିମ୍"

"ଜିମ୍, ବେଶ, ଏ ତିନବର୍ଷ ଭିତରେ ଏଇଠି ମଣିଷରୂପେ ତୁମକୁ କେବଳ ଦେଖିଲି ।"

ଏତିକି କହି ବେନ୍‌ଗାନ ଚାରିଆଡ଼କୁ ଚାହିଁ ଆସ୍ତେ ଆସ୍ତେ କହିଲା, "ଶୁଣ ଜିମ୍, ମୁଁ ଭାରି ଧନୀଲୋକ; ତୁମର କପାଳ ଭଲ, ମୋତେ

ଆଗ ଭେଟିଲି ।" ତାପରେ ଗୋଟାଏ ହାତ ଶକ୍ତକରି ଧରି କହିଲା, "ସତ କହତ; ତୁମ୍ଭେ କଣ ଫ୍ଲିଣ୍ଟର ଲୋକ ?"

'ନୋ' ଫ୍ଲିଣ୍ଟ ତ ବହୁଦିନୁ ମରିଗଲାଣି । ମୁଁ ଜାହାଜର ଲୋକ ନୁହେଁ; କିନ୍ତୁ ତାର ଦଳର ଲୋକ ଆମ୍ଭ ଜାହାଜରେ ଅଛନ୍ତି ଓ ଏହି ଦ୍ୱୀପରେ ଘୂରି ବୁଲୁଛନ୍ତି । ଆମର ଭାଗ୍ୟ ଖରାପ୍ ।

ବେନ୍‌ଗନର ମୁହଁ ବିବର୍ଣ୍ଣ ଦେଖାଗଲା । ସେ ଡ଼ରି ଡରି ପଚାରିଲା —"କେହି ଗ୍ଲେଟା ଲୋକ ଅଛି କି ?"

"କାହା କଥା କହୁଛ ? ସିଲଭର ?"

"ହଁ, ହଁ ସିଲ୍‌ଭର—ଏଇ ନାଁ । ତ ତାର ! ସେ ଜାହାଜରେ ରାନ୍ଧୁଥିଲା ଓ ସବୁରି ସର୍ଦ୍ଦାର ଥିଲା ।"

ବେନ୍‌ଗାନ ଯେତେବେଳେଯାଏଁ ମୋ ହାତକୁ ଜବରଦସ୍ତ ଧରିଥାଏ । ସଙ୍ଗେ ସଙ୍ଗେ ମୋ ହାତକୁ ଜୋରରେ ଝୁଙ୍କେଇ ଦେଇ ସେ କହିଲା—"ତୁମ୍ଭେ କେଉଁଠିକି ଆସିଛ ଜାଣ ?"

ଭାବି ଦେଖିଲି, କୌଣସି କଥା ଗୋପନକଲେ ଭଲଫଳ ହେବ ନାହିଁ । ସବୁ କଥା ତାକୁ ଖୋଲି କହିଲି —କେଉଁଠୁ ଜାହାଜରେ ବସିଲୁ କାହିଁକି ଆସିଛୁ, କିଏ କିଏ ଅଛୁ ସବୁ ସତ କଥା କହିଦେଲି ।

ବେନ୍‌ଗନ ମନଦେଇ ଶୁଣିଲା । ମୋ ପିଠି ଥାପୁଡ଼ାଇ କହିଲା— "ବେଶ୍ ଜିମ୍ ! ତୁମେ ଭାରି ସରଳ, ତୁମଭିତରେ ମଧ୍ୟ ଗୋଳମାଳ ହେଲାଣି ? ଆଚ୍ଛା ବେଶ, ତୁମ୍ଭେ ମୋ ଉପରେ ବିଶ୍ୱାସ ରଖ, ଦେଖିବ ବେନ୍‌ଗାନ ତୁମର ସବୁ କାମ କରିଦେବ । ତୁମକୁ ଗୋଟିଏ କଥା କହୁଛି ଶୁଣ, ବର୍ତ୍ତମାନ ଅବଶ୍ୟ ସବୁ କଥା କହିବି ନାହିଁ । କେତୋଟି ମାତ୍ର କଥାକହିବି । ଫ୍ଲିଣ୍ଟ୍ ଯେତେବେଳେ ସବୁ ରତ୍ନ ଏଇ ଦ୍ୱୀପରେ ପୋତିଲା, ସେତେବେଳେ ମୁଁ ତାର ଜାହାଜରେ ଥିଲି । ଛଅ ଜଣ ନାବିକ ନେଇ ସେ ଦ୍ୱୀପରେ ଓହ୍ଲାଇଲା । ଆମେ ସମସ୍ତେ ଜାହାଜରେ ରହିଲୁ । ସାତଦିନ ପରେ ଫ୍ଲିଣ୍ଟ ଏକ ନୌକାରେ ବସି ଜାହାଜରେ ପହଞ୍ଚିଲା ।

ଦେଖିଲା । ସାଙ୍ଗରେ କେହି ନଥାନ୍ତି । ଫ୍ଲିଣ୍ଟ ସେମାନଙ୍କୁ କବରଦେଇ ଆସିଥାଏ । କେମିତି ହତ୍ୟା କଲା, ଆମେ କେହି ଜାଣି ନ ଥାଉ । ଫ୍ଲିଣ୍ଟ ଜଣେ, ସେମାନେ ୬ ଜଣ । ତଥାପି ଫ୍ଲିଣ୍ଟ ସମସ୍ତଙ୍କୁ ହତ୍ୟା କରିଥିଲା ।"

ବିଲିବୋନସ ଆଉ ଲଂ ଜନ୍ ପଚାରିଲେ, "ଫ୍ଲିଣ୍ଟ, ରତ୍ନ କେଉଁଠି ରଖିଲ ?'

ସେ ମୁହଁ ବିକୃତ କରି କହିଲା, "ଇଚ୍ଛା ହେଲେ ଦ୍ୱୀପରେ କେତେଦିନ ରହି ଖୋଜାଖୋଜି କର । ମୁଁ କିନ୍ତୁ ଜାହାଜ ଛାଡ଼ି ଦେବି । ତୁମ ପାଇଁ ଅପେକ୍ଷା କରିବି ନାହିଁ ।" ତେଣୁ ସେମାନେ ରତ୍ନର ଠିକଣା ଜାଣିପାରିଲେ ନାହିଁ । ଚାରି ତିନି ବର୍ଷ ପରେ ମୁଁ ଆଉ ଗୋଟିଏ ଜାହାଜରେ ଚାକିରି କରିଥିଲି । ଏହି ବାଟରେ ଜାହାଜ ଯିବାବେଳେ ମୋର ପୂର୍ବ କଥା ମନେ ପଡ଼ିଗଲା । ମୁଁ କହିଲି, "ଫ୍ଲିଣ୍ଟ, ଏଇଠି ରତ୍ନ ଲୁଚାଇ ରଖିଛି, ଚାଲ ଆମେ ଖୋଜିବା ।" ଜାହାଜର କାପ୍ତାନ୍ ରାଜିହେଲେନାହିଁ; କିନ୍ତୁ ସଙ୍ଗୀମାନେ ଏକମତ ହୋଇ କହିଲେ, "ଚାଲ ଯିବା, ଖୋଜିବା ।" ତାପରେ ଆମେ ୧୨ ଦିନ କାଳ ଫ୍ଲିଣ୍ଟର ସମ୍ପତ୍ତି ଖୋଜିଲୁ; କିନ୍ତୁ ବୃଥା କୌଣସି ଧନରତ୍ନ ମିଳିଲା ନାହିଁ । ସବୁ ଶ୍ରମ ପଣ୍ଡ ହେଲା ଦେଖି ମୋ ସାଙ୍ଗମାନେ ମୋ ଉପରେ ଭୀଷଣ ବିରକ୍ତ ହେଲେ । ଶେଷରେ ମତେ ଏଠାରେ ଏକା ଛାଡ଼ିଦେଇ ଚାଲିଗଲେ । ଗଲାବେଳେ ମୋତେ ଗୋଟାଏ କୋଦାଳ, ଗୋଟାଏ ବନ୍ଧୁକ ଓ ଗୋଟିଏ କୁରାଢ଼ି ଦେଇ କହିଲେ 'ରତ୍ନ ଖୋଜୁଥାଅ, ଆମେ ଗଲୁ ।'

ସେହିଦିନୁ ମୁଁ ଏକା ଏହି ଦ୍ୱୀପରେ ଅଛି । ତିନି ବର୍ଷକାଳ ଖରା ବର୍ଷା, ଶୀତ, ଜାକର ସହି ଆସୁଛି । ମଣିଷ ଖାଦ୍ୟ ଦିନେ ହେଲେ ପାଇ ନାହିଁ । ଆଜି ମୋତେ ଦେଖିଲେ କିଏ କହିବ ଯେ, ଦିନେ ମୁଁ ଜାହାଜର ନାବିକ ଥିଲି ? ମୋର ଏଇ ନିର୍ବାସିତ ଦିନଗୁଡ଼ିକ କି ଭାବରେ କଟିଛି କ'ଣ କହିବି! ସାରାଦିନ ପାହାଡ଼ ଜଙ୍ଗଲରେ ବୁଲେ; ବଣଜନ୍ତୁ ଶିକାରକରି ଖାଏ । କେବେ କେବେ ଘରକଥା, ମାଆ କଥାଭାବେ; କିନ୍ତୁ ମୋର ବେଶୀ ବେଳ ଗୋଟିଏ କାମରେ କଟିଯାଏ । ଏତା କହି ସେ ମୃଦୁ ମୃଦୁ

ହସିବାକୁ ଲାଗିଲା । 'ତୁମେ ତୁମ ସ୍କୋୟାରକୁ ଏହି ସବୁ କଥା କହିବ ଆଉ କହିବ, ବେନଗନ୍ ଭଣ୍ଡ ଭଲ ଲୋକ, ତାଙ୍କୁ ବିଶ୍ୱାସ କଲେ କେବେ-ହେଲେ ବିପଦରେ ପଡ଼ିବ ନାହିଁ ।'

'ସବୁ ତ ବୁଝିଲି, ହେଲେ ଅସଲ କଥା ବୁଝି ପାରିଲି ନାହିଁ । ମୁଁ ଜାହାଜକୁ ଫେରି ଯିବି କପରି ?

"ତାହା ଗୋଟାଏ ବଡ଼ କଥା । ଯଦି ମତରେ ଏ ପ୍ରକାର ଅବସ୍ଥା ତେବେ ମଧ୍ୟ ଏତେ ଉପୃଷ୍ଠିତ ହେବାର କିଛି କାରଣ ନାହିଁ । ମୋର ଗୋଟିଏ ଗ୍ରେଟିଆ ନୌକା ଅଛି । ମୁଁ ତାକୁ ଯତ୍ନରେ ପାହାଡ଼ ତଳେ ଲୁଚାଇ ରଖିଛି । ତାହା ଭାରି ହାଲୁକା, ମୁଁ ନିଜେ ତାକୁ ତିଆରି କରିଛି । ରାତି ହେଲେ ତହିଁରେ ଚଢ଼ିବା ।"

ଏହି ସମୟରେ ଜାହାଜ ଉପରୁ ବନ୍ଧୁକର ଆବାଜ ହେଲା । ବେନଗନ ଚମକପଡ଼ି କହିଲା, 'ଏ କଣ ?

"ବୁଝି ପାରୁନ ? ଏମାନେ ସବୁ ଯୁଦ୍ଧ ଆରମ୍ଭ କଲେଣି, ତୁମେ ମୋର ପଛେ ପଛେ ଆସ ।"

ଏହା କହି ଡ଼ର ଭୟ ଭୁଲି ମୁଁ କୂଳ ଅଭିମୁଖରେ ଛୁଟିବାକୁ ଲାଗିଲି ।

ବେନଗନ୍ ମୋର ପଛେ ପଛେ ଧାଇଁଲା, "ଏଆଡ଼େ ନୁହେଁ ବନ୍ଧୁ ଜିମ୍ । ବାଁ ହାତ ପଟ ଏଇ ଗଛ ତଳେ ମୁଁ ପ୍ରଥମ ଶିକାର କରି-ଥିଲି । ଏବେ ସେମାନେ ମୋ ଭୟରେ ଏଆଡ଼େ ଆସନ୍ତି ନାହିଁ । ଏଇ ମାଟିଗୁଡ଼ ଉପରେ ମୁଁ ମଧ୍ୟେ ମଧ୍ୟେ ପ୍ରାର୍ଥନା କରେ, ଏଇଟା ମୋର ଗୀର୍ଜା ।"

ଉତ୍ତରର ଅପେକ୍ଷା ନ କରି ସେ କ୍ରମାଗତ ଗପୁଥାଏ ଓ ଧାଉଁ-ଥାଏ । ଜାହାଜରୁ ମଧ୍ୟେ ମଧ୍ୟେ ବନ୍ଧୁକର ଆବାଜ ଆସୁଥାଏ । କିଛି ସମୟପରେ ଆଉ କିଛି ଶବ୍ଦ ଶୁଣାଗଲା ନାହିଁ ।

କିଛି ଦୂର ଆଗସରିହୋଇ ଦେଖିଲି ଯେ ପ୍ରାୟ ଅଧମାଇଲ ଦୂରରେ ପତାକା ଉଡ଼ୁଛି । ଆମର କ୍ୱାଟର ନିଶାଣ ।

## ଡାକ୍ତରଙ୍କ କଥା

ଦୁଇଖଣ୍ଡ ଛୋଟ ବୋଟରେ ଆମ ବିପକ୍ଷ ଦଳର କେତେକଲୋକ ପ୍ରାୟ ୧୨ଟା ବେଳେ କୂଳ ଆଡ଼କୁ ଅଗ୍ରସର ହେଲେ । ଜାଁ ସେମାନଙ୍କ ଅଜ୍ଞାତ ସାରରେ ବୋଟକୁ ଛେଡ଼ି ନେଲା । ସେମାନେ କିଛିଦୂର ଯିବା ପରେ ଜମର ବିପଦ ଆଶଙ୍କା କରି ମୁଁ ଓ ହଣ୍ଟର ଗୋଟିଏ ବଡ଼ ବୋଟ-ନେଇ ସେମାନଙ୍କର ଅନୁସରଣ କଲୁ । ଦ୍ୱୀପର ଗୋଟିଏ ସ୍ଥାନରେ ସୋଡ଼ହିଏ ଥିଲା । ସେଇଠି ସେମାନେ ବୋଟ ଛାଡ଼ି ଚାଲିଗଲେ—ମୁଁ ଯାଇ ଚାଲିଲି ନାହିଁ । ସେମାନଙ୍କ ମଧ୍ୟ ଆଉ କେହି ମିଳିଲା ନାହିଁ । ବୋଧ-ହୁଏ ସେମାନେ ଦ୍ୱୀପରେ ପହଞ୍ଚି ବୋଟକୁ ବହୁଦୂର ପର୍ଯ୍ୟନ୍ତ ଟାଣି ନେଇଥିଲେ । ଯାହା ହେଉ, ମୁଁ ଦ୍ୱୀପକୁ ଯାଇ ସେମାନଙ୍କୁ ଖୋଜିବାରେ ଲାଗିଲି । କିନ୍ତୁ କାହାରି ସନ୍ଧାନ ପାଇଲି ନାହିଁ ।

ମୁଁ ପୂର୍ବରୁ ଗୋଟିଏ କିଲ୍ଲାର ନକ୍ସା ଦେଖିଥିଲି । ସେଇଟା ପ୍ରକୃତରେ କି ପ୍ରକାର ତାହା ଜାଣିବା ପାଇଁ ବଡ଼ ଆଗ୍ରହ ଜାତ ହେଲା, କେଣୁ ଆଗକୁ ଚାଲିଲି । କିଛି ଦୂର ଯିବା ପରେ ପାହାଡ଼ ଉପରେ କିଲ୍ଲାଟି ଦେଖାଗଲା । ସେଇ ପାହାଡ଼ ଉପରୁ ସ୍ୱଚ୍ଛ ଝରଣାଟିଏ ବହି ଆସୁଥାଏ । ତାର ଜଳ ବଡ଼ ମଧୁର । ମନେ ମନେ ଭାବିଲି, ଯଦି ଆମେ ସମସ୍ତେ ଏଠାକୁ ଚାଲି ଆସନ୍ତୁ ତେବେ ଆମ୍ଭର କୌଣସି କାରଣ ରହିବ ନାହିଁ । ଶତ୍ରୁମାନେ ମଧ୍ୟ ଆମର କିଛି କରିପାରିବେ ନାହିଁ । ଏ ସ୍ଥାନ ଆକ୍ରମଣ କରିବା ଶତ୍ରୁ ପକ୍ଷରେ ବଡ଼ କଷ୍ଟକର, ବିଶେଷତଃ ଆମେ ଯଦି ଥରେ କିଲ୍ଲା ଭିତରେ ବାରୁଦ ବନ୍ଧୁକ ନେଇ ପହଞ୍ଚି ଯାଉ ତେବେ ଆଉ ଚିନ୍ତା କଣ ?

ଏହିପରି ନାନାକଥା ଭାବି ମୁଁ ପାହାଡ଼ରୁ ଓହ୍ଲାଇ ପୁଣି ଜାହାଜକୁ ଆସିଲି । କାପ୍ତାନ୍ ଓ ସ୍କ୍ୱାୟାରଙ୍କୁ କିଲ୍ଲାକଥା କହିଲି । ସେମାନେ ସଙ୍ଗେ ସଙ୍ଗେ କିଲ୍ଲାକୁ ଯିବାକୁ ପରାମର୍ଶ ଦେଲେ । ଆମେ ଗୋଟିଏ ବଡ଼ ବୋଟରେ ଜିନିଷପତ୍ର ବୋଝାଇ କରି ବାହାରିଲୁ । କିଛିଦୂର ଯିବା ପରେ ଆମର ସ୍ଥିର ହେଲା ଯେ ଜାହାଜକୁ ଚୁଲଲୋକ ଶତ୍ରୁମାନଙ୍କୁ

ଧ୍ୱଂସ କରିଦେବା ଆବଶ୍ୟକ । ତେଣୁ ଗୁଳି ଚଳାଇଲୁ । ଜାହାଜରୁ ମଧ୍ୟ ଗୁଳି ଆସିଲା । ଏଥର ଦ୍ୱୀପଆଡ଼ୁ ବି ଆମ ଆଡ଼କୁ ଗୁଳି ଆସିଲା । ଯାହା ହେଉ ଉଭୟ ପକ୍ଷର ଗୁଳିକୁ ବଞ୍ଚାଇ ଆମେ ଦ୍ୱୀପଆଡ଼କୁ ଗଲୁ । ପାଖ ବାଟ ଜଣା ନ ଥିବାରୁ କଲ୍ଲାଠାରୁ ବହୁଦୂରରେ ଏକ ଜଙ୍ଗଲରେ ପହଞ୍ଚିଲୁ ।

ଭୟଭୀତ ହୋଇ ଦ୍ରୁତ ବେଗରେ ଯାଉଁ ଯାଉଁ ଶତ୍ରୁର ପଦଶବ୍ଦ ଶୁଣାଗଲା । କାପ୍ତାନ୍ ଶବ୍ଦ ଆସୁଥିବା ଆଡ଼କୁ ଲକ୍ଷ୍ୟକରି ଗୁଳି ଚଳାଇଲେ କିନ୍ତୁ ଗୁଳି ବାଜିଲା କି ନାହିଁ କିଛି ଜଣାଗଲା ନାହିଁ । ଶତ୍ରୁଙ୍କର ଶବ୍ଦ ମଧ୍ୟ ଆଉ ଶୁଣାଗଲା ନାହିଁ । ଏତିକି ବେଳେ ଦୂରକୁ କଲ୍ଲା ଦେଖାଗଲା । ଆମେ ଆନନ୍ଦ ମନରେ କଲ୍ଲା ଆଡ଼କୁ ଦୌଡ଼ିଲୁ । ମାତ୍ର ଏହି ସମୟରେ ଜାହାଜରୁ ଗୋଟିଏ ଗୁଳି ଆସି ରେଡ଼ରୁଥ ଦେହରେ ବାଜିବାରୁ ସେ ଢଳି ପଡ଼ିଲା । ତାପରେ ତାର ଅନୁରୋଧରେ ଆମେ ଗୋଟିଏ ମୃତ୍ୟୁ-କାଳୀନ ପ୍ରାର୍ଥନା ବୋଲିଲୁ । ସେ ମରିଯିବାରୁ ବେଶି ସମୟ ଡେରି ନ କରି ଆମେ ସେଠାରେ ଏକ ପତକା ଉଡ଼ାଇ କଲ୍ଲାରେ ଯାଇ ପହଞ୍ଚିଲୁ । ଟିକିଏ ଆଶ୍ୱସ୍ତ ହେବା ପରେ ଜିମ୍ କଥା ମନେ ପଡ଼ିଲା । ସେ କେଉଁଠି କିପରି ଅବସ୍ଥାରେ ଅଛି ଏ କଥା ଆମକୁ ବଡ଼ ଭାବନାରେ ପକାଇଲା । ଏହି ସମୟରେ ହଠାତ୍ ଶୁଣାଗଲା—ଡାକ୍ତର, ସ୍କୋୟାର, କାପ୍ତାନ୍ ହ୍ୟାଲୋ ହଣ୍ଟର୍—ଏଇଠି ଅଛ କି ? ଚିତ୍କାର ଶୁଣି ଦୁର୍ଗ ଦ୍ୱାରରେ ପହଞ୍ଚି ଦେଖେ ତ ଜିମ୍ ଉର୍ଦ୍ଧ୍ୱଶ୍ୱାସ ହୋଇ ଧାଇଁଛି ।

## ଜିମ୍‌ର କଥା

ପତକା ଉଡ଼ିବାର ଦେଖି ବେନ୍ ଗନ୍ ଠିଆ ହୋଇପଡ଼ିଲା । ମୋର ହାତକୁ ଟାଣିନେଇ କହିଲା, 'ହୋଇ ଦେଖ ପତକା, ନିଶ୍ଚୟ ତୁମର ବନ୍ଧୁମାନେ!'

ମୁଁ କହିଲି—ବନ୍ଧୁ ହୋଇପାରେ, ଶତ୍ରୁ ମଧ୍ୟ ହୋଇ ପାରେ ।

ବେନ୍ ଗନ୍ କହିଲା—ନା ମୋର ବିଶ୍ୱାସ ତୁମର ବନ୍ଧୁମାନେ ସିଲ୍‌ଭର ବୋଧହୁଏ ଜଲିବୋଟରେ ପଳାଇଛି । ମନେ ହେଉଛି ବୋଧ



( ଗୋଟିଏ କମାଣରୁ ଗୁଳି ଗଛ ଉପର ଦେଇ ପ୍ରଚଣ୍ଡ ବେଗରେ ଗ୍ଳିଗଲା )

ହର୍ଷ ଖଣ୍ଡଯୁଦ୍ଧ ହୋଇଛି । ତୁମର ବନ୍ଧୁମାନେ ଜିତିଛନ୍ତି ଓ କଣ୍ଢାରେ ନନ୍ଦନରେ ଅଛନ୍ତି । ଜାଣ ଜିମ୍, ଅନେକ ବର୍ଷ କାଟି ମିଶି ଏ କଣ୍ଢା ଗଢ଼ିଥିଲା । ସେ ବଡ଼ ନର୍ଭିକ ଥିଲା ।

ମୁଁ କହିଲି – ଆଚ୍ଛା, ଭଲ ତ ଦେଖିବ; ଏଟାକୁ କେଉଁମାନେ ଆସିଛନ୍ତି ?

ଯିବା ଆଗରୁ କହି ଦେଇଯାଅ, ମୋ ପାଇଁ ଛେନା ଓ ରୋଟି ପଠାଇବ ତ ? ମୁଁ ବର୍ତ୍ତମାନ ଯାଉଛି । କିନ୍ତୁ ରୋଟି ଛେନା କଥା ନିଶ୍ଚୟ ମନେ ରଖିବ । ଭୁଲି ଯିବ ନାହିଁ; ମତେ କେଉଁଠି ଭେଟିବ କହିଲ ? ପ୍ରଥମେ ଯେଉଁଠାରେ ଦେଖିଥିଲ । ହଁ, ତମେ ନିଜେ ନ ଆସି କାହା-ହାତରେ ପଠାଇଦେଇ ପାର । କିଏ ଆସୁ ପଛେ ସେ ଯେପରି ଏକୁଟିଆ ରୋଟି ଓ ଛେନା ଧରି ଆସେ ବୁଝିଲ ? କେବେ ପଠାଇବ କହିଲ ?

'ସବୁ ବୁଝିଛି, ସବେ ଆଗ ଯାଏ।'

'ଭୁଲିଯିବ ନାହିଁ ତ ?'

'ନା—ନା' ।

'ଅଚ୍ଛା ତେବେ ଯାଅ; କିନ୍ତୁ ଯଦି ସେମାନେ ସିଲ୍‌ଭରର ଲୋକ ହୋଇ ଥାଆନ୍ତି, ତେବେ ?

'ତେବେ ମୁଁ ପଳାଇଯିବି; ତମ କଥାସବୁ ଗୋପନ ରଖିବି ।'

'ଆଚ୍ଛା, ଠିକ୍ କଥା, ସେଇଆ କର । ତୁମେ ବଡ଼ ଭଲ ପିଲା ଜିମ୍; ତୁମ ଉପରେ ମୋର ବଡ଼ ବିଶ୍ୱାସ ।'

ଏହି ସମୟରେ ଖୁବ୍‌ଜୋରରେ ବନ୍ଧୁକର ଆବାଜ ଶୁଣାଗଲା । ଦେଖିଲୁ, ଗୋଟିଏ ଗୁଳି ବଣଭିତରୁ ଆସି ଆମ ଆଗରେ ପଡ଼ିଛି । ପ୍ରାଣ-ଭୟରେ ଆମେ ଦୁଇମୁହାଁ ହୋଇ ଛୁଟିଲୁ । ଭୟେ ଭୟେ ଏଠି ସେଠି ଲୁଚି ଶେଷରେ ସମୁଦ୍ର କୂଳରେ ପହଞ୍ଚିଲୁ । ଜାହାଜ ନଙ୍ଗର ସ୍ଥାନରେ ରହିଛି । ତହିଁରେ ଜଳଦସ୍ୟୁମାନଙ୍କର କଳାପତାକା ଉଡ଼ୁଛି । କିଛିକ୍ଷଣ

ଝାଉଁଟରେ ରକ୍ତ ଦେଖେ ତ କେତେ ଲୋକ କିଲ୍ଲାପାଖ ବାଲିରେ ବସି କଣ ଗୋଟାଏ କାଟୁଛନ୍ତି । ଭଲ କରି ଦେଖେ ତ ଆମରି ଜାଲିବୋଟ । ତା ପରେ ପ୍ରବଳ ବେଗରେ ଅଗ୍ନି ଜଳିବାକୁ ଲାଗିଲା । ସମସ୍ତେ କିଲ୍ଲା ଭିତରେ ପ୍ରବେଶ କଲେ । ମୋ ପ୍ରାଣରେ ଦମ୍ଭ ପଶିଲା । ମୁଁ କିଲ୍ଲାକୁ ଠିକ ବୋଲି ସ୍ଥିରକରି ସେ ଆଡ଼କୁ ଯିବାକୁ ଲାଗିଲି । କିଛି ଦୂରରେ ସାଦା ପାହାଡ଼ ଦେଖାଗଲା । ବେନଗନର ସାଦା ପାହାଡ଼କଥା ମନେପଡ଼ିଲା । କିଲ୍ଲାରେ ପହଞ୍ଚ ଦେଖେ ତ ଆମରି ଲୋକ । ମୋତେ ଦେଖି ସେମାନେ ଯେତେ ଖୁସି ହେଲେ କଣ କହିବି ? ବେନ ଗନ୍ ଯେମିତି ବର୍ଣ୍ଣନା କରିଥିଲା କିଲ୍ଲାଟି ଠିକ ସେହିପରି !

ଏଠି ଆସି ଦେଖେ ତ ଖୁବ ମାରପିଟ ହୋଇଛି । ଗ୍ରେର ମୁହଁରେ ବ୍ୟାଣ୍ଡେଜ ବନ୍ଧା ହୋଇଛି । ଉସ୍ମ ଜଣେ ତାଙ୍କୁ ଅଫରେ ଆରାମ କରୁଛନ୍ତି । ଆଉ ଶୁଣିଲି ଯେ ଉଡନପ୍ଲନ ଜ୍ୟାକ ଚଲେ ରେଡ଼ରୁଥ୍ ମରିଛନ୍ତି । ତାଙ୍କୁ କବର ଦେବା ମଧ୍ୟ ଏ ପର୍ଯ୍ୟନ୍ତ ସମ୍ଭବ ହୋଇପାରିନାହିଁ ।

କାପ୍ତାନ ଆମ ସମସ୍ତଙ୍କ ଭାଗ କାମ ବାଣ୍ଟି ଦେଲେ । ଆମ୍ଭେ ଦୁଇଦଳରେ ବିଭକ୍ତ ହେଲୁ । ପ୍ରଥମ ଦଳରେ ମୁଁ, ଡାକ୍ତର ଓ ଗ୍ରେ. ଦ୍ୱିତୀୟ ଦଳରେ ସ୍କୋୟାର, ହାଣ୍ଟର ଓ ଜୟେସ । ଆମେ ସମସ୍ତେ ପରିଶ୍ରାନ୍ତ; କିନ୍ତୁ କାପ୍ତାନ କାହାକୁ ବିଶ୍ରାମ କରିବାକୁ ଛାଡ଼ିଲେ ନାହିଁ । ନିଆଁ ଜାଳିବା ନିମନ୍ତେ କାଠ ଆଣିବାକୁ ଦୁଇଜଣ ଗଲେ । ଆଉ ଦୁଇଜଣ କବର ଖୋଳିବାକୁ ଗଲେ । ଡାକ୍ତର ରନ୍ଧା ଭାର ନେଲେ । କାପ୍ତାନ୍ ନିଜେ ଘୂରି ଘୂରି ସମସ୍ତଙ୍କୁ ସାହସ ଦେବାକୁ ଲାଗିଲେ ।

ରନ୍ଧାଘରର ନିଆଁ ଓ ଧୂଆଁରେ ଡାକ୍ତରଙ୍କର ଭାରି କଷ୍ଟ ହେଉଥାଏ । ସେ ପବନ ପାଇବା ପାଇଁ ଓ ଆଖିକୁ ବିଶ୍ରାମ ଦେବା ପାଇଁ ମଝେ ମଝେ ଦୁଆର ମୁହଁରେ ଆସି ଠିଆ ହେଉଥାଆନ୍ତି । ପ୍ରତିଥର ଡାକ୍ତର ମତେ କିଛି କହୁ ଥାଆନ୍ତି । ଥରେ କହିଲେ, ବୁଝିଲ ଜିମ୍ କାପ୍ତାନ ଭାରି ଭଲଲୋକ, ମନେରଖ—ମୋର ଭଲ ଶବ୍ଦର ଅର୍ଥ ଖୁବ ଗମ୍ଭୀର !

ପୁଣି ନିକଟ ପୂର୍ବେ ଆଉଥରେ ଆମି ମୁହଁ ପୋଛି ଠିଆହେଲେ । ପରେ ଭୁନ ଭୁନ କରି କହିଲେ 'ଦେଖ ଜିମ୍ ବେନଗନ୍‌କ ପ୍ରକାର ଲୋକ କଣ୍ଢ ଦୋଷୀ ?'

'ନେହାଣି. ଜାଣିବା କଷ୍ଟ; କିନ୍ତୁ ମୋର ସନ୍ଦେହ ସେ ନିକଟ ପାଗଳ ହୋଇ ।'

'ଜିମ୍ ତା ଅବସ୍ଥା ହୋଇଥିବ, ଗୋଟିଏ ଲୋକ ଜନ ବର୍ଷ କାଳ ମାଳୀନ ହୋଇ ଏହି ଏଠା ନିର୍ଜନ ଦ୍ୱୀପରେ ରହିଛି । ଖାଇବାକୁ କିଛି ପଦାର୍ଥ ନାହିଁ । ସେ କେବେ ଆମ ପରି ହୋଇ ପାରିବ ? ସେ ତ ଅବଶ୍ୟ ଗୋଟାଏ ଅସ୍ୱାଭାବିକ ଜୀବ ପରିଣତ ହେବ, ଏଥିରେ ସନ୍ଦେହ ନାହିଁ ।'

ହଁ —ତମେ ମତେ କହିଥିଲ ସେ ଚେଜି, ମାଖନ ଓ ଛେନା ଖାଇ ଭଲ ପାଏ ?

'ହଁ—ଖୁବ ଭଲ ପାଏ. ମୋର ସନ୍ଦେହ ଏଇ ମାଖନ, ଚେଜି ଓ ଛେନା ମାଇବାପାଇଁ ତାର ପାଗଳାମି କେଶୀ. ଏଗୁଡ଼ିକ ପାଇଲେ ତାର ପାଗଳାମି ଅବଶ୍ୟ ବହୁ ପରିମାଣରେ କମିଯିବ ।'

"ଆଚ୍ଛା ଦେଖାଯାଉ ମାଖନ, ଚେଜି ଛେନାଦେଇ କେଉଁ ପ୍ରକାର କେତେ ଉପକାର ହେଉଛି । ଜିମ୍ ତମେ ତ ଜାଣ ମୁଁ କେବେ ନାଶ ସଙ୍ଗେ ନାହିଁ । ତୁମେ ମୋର ନାଶ ବ'କସ (ସ୍ନୁଫ ବକସ) ଦେଖିନ ମୁଁ ମୋ'ର ସେହି ବାକ୍ସରେ ଇଟାଲିରେ ପ୍ରସ୍ତୁତ ହୋଇଥିବା ପାର-ମିସାନ ଛେନା ରଖିଛି । ଏହା ଖୁବ ବଳଦାୟକ ଓ ପୁଷ୍ଟିକର । ଆଚ୍ଛା ସେ ଖଣ୍ଡ ବେନ୍‌ଗନ୍‌କୁ ଦିଆଯାଉ !'

ସନ୍ଧି ଭୋଜନ ପୂର୍ବରୁ ଆମ୍ଭେ ବୃଦ୍ଧ ଟମ ରେଉ଼ରୁଥିଲୁ କବର ଦେଲୁ । କିଛି ସମୟ ଖୋଲା ପବନରେ ଠିଆହୋଇ ସନ୍ଧି ଭୋଜନ ନିମନ୍ତେ ଭିତରକୁ ଗଲୁ । ତାପରେ ଆମ ଦଳର ତିନିଜଣ ମୁଖ୍ୟବ୍ୟକ୍ତି ବସି ଆମର କର୍ମସୂଚୀ ସମ୍ବନ୍ଧରେ ଆଲୋଚନା କରିବାକୁ ଲାଗିଲେ ।

ଏଣେ ଆମର ଖାଦ୍ୟ ପ୍ରାଦ୍ୟ ପ୍ରାୟ ସରିଆସିଲାଣି, କିନ୍ତୁ ଆମ ମନରେ ଆଶାଥାଏ ଯେ ବିପକ୍ଷମାନଙ୍କୁ ନେଇ ଶତ୍ରୁ ପକ୍ଷ ବାହାରିଯିବା ପୂର୍ବରୁ ଆମେ ସେମାନଙ୍କୁ ନିଶ୍ଚୟ ହତ୍ୟା କରିବୁ । ସେମାନଙ୍କର ସଂଖ୍ୟା କ୍ରମଶଃ ହ୍ରାସ ପାଉଛି । ୧୯ ଜଣ ଥିଲେ ବର୍ତ୍ତମାନ ୧୬ ଜଣ ଅଛନ୍ତି । ସେଥିରୁ ଦୁଇଜଣ ଭୟାନକ ଆଘାତପ୍ରାପ୍ତ । ଆମ୍ଭେ ସେମାନଙ୍କଠାରୁ ପ୍ରାୟ ଅଧମାଇଲ ଦୂରରେ ଥିଲେ ମଧ୍ୟ ସେମାନଙ୍କର ଚର୍ଜନ ଓ ସାମୁଦ୍ରିକ ସଙ୍ଗୀତ ଗର୍ଜ୍ଜର ଧ୍ୱନି ପର୍ଯ୍ୟନ୍ତ ଆମକୁ ଶୁଣାଯାଉଥାଏ । ଡାକ୍ତର ଓ କାପ୍ତାନ୍ ଜାହାଜ ଫେରପାଇବା ନିମନ୍ତେ ଉପାୟ ଚିନ୍ତା କରୁଥାଆନ୍ତି । ମତେ ଭାରି କ୍ଳାନ୍ତ ଲାଗୁଥାଏ । ମୁଁ କାଠଗଡ଼ପରି ଘୋର ନିଦରେ ଅଚେତ ହୋଇ ପଡ଼ିଲି ।

ସକାଳ ହେବା ସଙ୍ଗେ ସଙ୍ଗେ ହଠାତ୍ କାହାର କଣ୍ଠସ୍ୱର ଶୁଣି ମୋର ନିଦ ଭାଙ୍ଗିଗଲା । କିଏ ଜଣେ କହୁଛି 'ସନ୍ଧି ପତାକା ଉଡ଼ାଇ ଦେଇ-ଗଲି ।' ସିଲ ଭର ନିଜେ ଉଡ଼ାଇ ଦେଲ—ଆଉ କେହି ନୁହେଁ । ଏହଟା ଶୁଣି ମୁଁ ଆଖି ମଳି ମଳି ଶେଯରୁ ଉଠି ଡ଼ଆଁଟେ ମାରି ଆସି ଠିଆହେଲି । ପତାକା ଦେଖିବା ଆଶାରେ ନିଦ ମଳମଳ ଆଖିରେ ଚତୁଃପାଖକୁ ଚାହିଁ-ବାକୁ ଲାଗିଲି ।

## ସିଲଭରର ଚାଲାକି

ସତକୁସତ କାନ୍ଥ ବାହାରେ ଦୁଇଟିଲୋକ ଦେଖାଗଲେ । ଜଣେ ଧଳା ପତାକା ଧରିଥାଏ । ଆଉ ଗୋଟିଏ ଗମ୍ଭୀର ମୂର୍ତ୍ତି ତାପାଖରେ ଠିଆ ହୋଇଥାଏ । ସେ ବୋଧହୁଏ ସିଲ୍ଭର ।

ସେଦିନ ସକାଳୁ ଭୀଷଣ ଥଣ୍ଡା ପଡ଼ୁଥାଏ । ମୋ ଦେହ ଶୀତରେ ଠକଠକ ହୋଇ ଥରୁଥାଏ । ଏହି ସମୟରେ କାପ୍ତାନ୍ ସେମାନଙ୍କ ବନ୍ଧୁକ ଲକ୍ଷ୍ୟ କରି ଚିତ୍କାର କରି ଉଠିଲେ କିଏ ଅଛ ? ଜବାବ ଦିଅ—ନଚେତ୍ ଗୁଳି କରିଦେବି । ସଙ୍ଗେ ସଙ୍ଗେ ସିଲଭର ଉଚ୍ଚସ୍ୱରରେ ଉତ୍ତର ଦେଲା 'ଆମ୍ଭେ ସନ୍ଧି ପତାକା ଉଡ଼ାଉଛୁ; ଚାହିଁ ଦେଖ ।'

ପ୍ରତି ମୂହୂର୍ତ୍ତରେ ଶତ୍ରୁ ପକ୍ଷର ଗୁଳିର ସମ୍ଭବନା । ତେଣୁ କାପ୍ତାନ୍ ଖୁବ ବ୍ୟସ୍ତହୋଇ ଆମ୍ଭ ଆଡ଼କୁ ଚାହିଁ କହିଲେ, "ଡାକ୍ତର! ସାମ୍ନାରେ ନଜର ରଖ—ଉତ୍ତରଆଡ଼କୁ ଆଦୌ ହଲଚଲ ହୁଅନାହିଁ । ଜମ୍, ତମେ ପୂର୍ବଆଡ଼କୁ ନଜରଦିଅ । ଗ୍ରେ ଲମେ ପଶ୍ଚିମ ଆଡ଼କୁ ଯାଅ । ସମସ୍ତେ ଗୁଳିଭରା ବନ୍ଧୁକ ଧରି ପ୍ରସ୍ତୁତ ଥାଅ, ଖୁବ ସାବଧାନ ରହିବ ।"

ଏହା କହି କାପ୍ତାନ୍ ପୁଣି ସିଲ୍ଭର ଆଡ଼କୁ ମୁହଁ ବୁଲାଇ ପଚାରିଲେ, "ସନ୍ଧିର ନିଶାଣ ଉଡାଇ ତୁମେ କଣ କହିବାକୁ ଚାହଁ ?"

ଏଥର ସିଲ୍ଭର ଉତ୍ତରଦେଲାନାହିଁ । ଅନ୍ୟ ଜଣେ ଉତ୍ତର ଦେଲା, କାପ୍ତାନ୍ ସିଲ୍ଭର ସନ୍ଧିର ପ୍ରସ୍ତାବ ଆଣିବାକୁ ସମ୍ମତ ।

କାପ୍ତାନ ସ୍ମଲେଟ ଆଶ୍ଚର୍ଯ୍ୟ ହୋଇ ଉତ୍ତର ଦେଲେ, "କାପ୍ତାନ୍ ସିଲ୍ଭର ପୁଣି କିଏ ? ସିଲ୍ଭରନାମରେ କୌଣସି କାପ୍ତାନ୍‌କୁ ତ ମୁଁ ଜାଣେ ନାହିଁ ।"

ଏହାଶୁଣି ସିଲ୍ଭର ମୁହଁ ଖୋଲିଲା । ସେ କହିଲା—"ଏମାନେ ସମସ୍ତେ ମତେ କାପ୍ତାନ୍ କରିଛନ୍ତି । ଆପଣ ତ ଜାହାଜ ଛାଡ଼ି ଚାଲିଆସିଲେ । ଜଣେ କାପ୍ତାନ୍ ନ ହେଲେ ଜାହାଜର କାମ ଚଳିବ କିପରି ? ଏଣୁ ଏମାନେ ମତେ କହିଲେ -"ସେ ଯାହା ହେବାର ହେଲାଣି, ଆମେ ଆପଣଙ୍କର ଅଧୀନରେ ରହିବାକୁ ରାଜିଅଛୁଁ; କିନ୍ତୁ ଆପଣଙ୍କୁ ଗୋଟିଏ ପ୍ରସ୍ତାବରେ ରାଜିହେବାକୁ ପଡ଼ିବ । ଏକ ମିନିଟ ପାଇଁ ମୋ ପାଖକୁ ଆସିଲେ ସେ କଥାଟି କହିବ; କିନ୍ତୁ ପ୍ରତିଜ୍ଞା କରନ୍ତୁ, ମୋର କୌଣସି ଅନିଷ୍ଟ କରିବନାହିଁ ।

କାପ୍ତାନ୍ ସ୍ମଲେଟ ଉତ୍ତରଦେଲେ—ମୋର ସେଠାକୁ ଯିବାର କୌଣସି ଆବଶ୍ୟକତା ନାହିଁ । ତୁମର ଇଚ୍ଛାହେଲେ ଏଠାକୁ ଆସିପାର— ସାବଧାନ, ଭଗବାନ ଅଛନ୍ତି । କୌଣସି ବିଶ୍ୱାସଘାତକ କାର୍ଯ୍ୟ କରନାହିଁ । ମୁଁ ତୁମର କୌଣସି ଅନିଷ୍ଟ କରିବନାହିଁ । ଏ କଥା ମଧ ଧ୍ରୁବ ସତ୍ୟ ।"

"ବେଶ, ତା ହେଲେ ଠିଆ ହେଲି—ଆପଣଙ୍କର ମୁହଁର କଥା ତ ଯଥେଷ୍ଟ । ମୁଁ ଜାଣେ ଆପଣଭଦ୍ରଲୋକ, ଆପଣ ମଧ ମତେ ଠିକ୍ ସେହିପରି

ମନେ କରିବେ । "ହାତରେ ପତାକା ଧରିଥିବା ଅନ୍ୟ ବ୍ୟକ୍ତିଜଣକ ଆଖି-ଠାରି ସିଲ୍‌ଭରକୁ ମନାକଲା । ସିଲ୍‌ଭର ମୃଦୁ ହସି ତା ପିଠି ଥପୁଡ଼ାଇ ଏଇ ଭାବ ପ୍ରକାଶ କଲା । ମିଛରେ କାହିଁକି ଆଶଙ୍କା କରୁଛ ?

ସିଲ୍‌ଭର ଆଉ କାଳ ବିଳମ୍ବ ନ କରି କାନ୍ଥ ମଧ୍ୟକୁ ଆସିଲା । କାପ୍ତାନ୍‌ଙ୍କ ନିକଟକୁ ଆସି ଅଭିବାଦନ ଜଣାଇ ନୀରବରେ ଠିଆହେଲା ।

କାପ୍ତାନ୍ ପଚାରିଲେ—"କେମିତି ଅଛ ସିଲ୍‌ଭର ? ଏଇଠି ବସ ।"

ସିଲ୍‌ଭର କହିଲା—"ଆଜ୍ଞା—ଘର ଭିତରେ କଣ ମୋପାଇଁ ସ୍ଥାନ ନାହିଁ ? ବାହାରେ ଭୀଷଣ ଥଣ୍ଡା । କାପ୍ତାନ୍ ଜବାବ ଦେଲେ—ତୁମେ ନିଜ ଦୋଷରୁ ବିପଦକୁ ଡାକିଆଣିଛ । ନ ହେଲେ ତ ଭଲରେ ଥିଲ । ଆମ୍ଭ ଜାହାଜର ପାଚକ କାର୍ଯ୍ୟଟା ମନ୍ଦ ଥିଲା କି ? ବର୍ତ୍ତମାନ ଦସ୍ୟୁଦଳର କାପ୍ତାନ୍ ହୋଇ ଆମ୍ଭ ବିରୁଦ୍ଧରେ ଠିଆହେବା ବଡ଼ ବୁଦ୍ଧି-ମାନର କାର୍ଯ୍ୟ, ନୁହେଁ ? ଯେତେବେଳେ ପାଚକ ଥିଲ, ମୁଁ ତମ ପ୍ରତି ଯଥେଷ୍ଟ ଭଲ ବ୍ୟବହାର କରୁଥିଲି । ବର୍ତ୍ତମାନ ଦସ୍ୟୁସର୍ଦ୍ଦାର ହୋଇ ଅଧିକ ଆଶା କଲେ ଜାଣିରଖ ମୃତ୍ୟୁ ତମର ସୁନିଶ୍ଚିତ ।"

ସିଲ୍‌ଭର କହିଲା—"ଆଜ୍ଞା, ବେଶ, ଏଇ ବାଲି ଉପରେ ବସି ଆପଣଙ୍କ ସଙ୍ଗେ କଥାବାର୍ତ୍ତା ହେବ ।" ଏ ସ୍ଥାନଟି ଭାରି ସୁନ୍ଦର । ଆରେ, ଜିମ୍ ମଧ୍ୟ ଏଇଠି ଅଛୁ ? ଡାକ୍ତର ମଧ୍ୟ ଅଛନ୍ତି ? ଆପଣମାନେ ସମସ୍ତେ ମିଶି ଗୋଟିଏ ସୁଖି ପରିବାର ପରି ବାସକରୁଛନ୍ତି । ବେଶ ଭଲ କଥା । କାଲି ରାତିରେ ଆମ ଲୋକମାନେ ବାହାରେ ଥଣ୍ଡାରେ ରହି ଶୋଇ-ପାରିଲେ ନାହିଁ । ଆମ୍ଭେ ସମସ୍ତେ ଶୀତରେ ଠକଠକ ହୋଇ କମ୍ପୁଅଛୁ । ସେ ଯାହାହେଉ ଆମେ ବର୍ତ୍ତମାନ ସନ୍ଧିକରିବାପାଇଁ ଆପଣଙ୍କ ପାଖକୁ ଆସିଛୁ । ସନ୍ଧିର କଥାବାର୍ତ୍ତା ହେଉ—ତାହା ଶୁଣିଲେ ମୋର ସଙ୍ଗୀଟି ଫେରିଯିବ ।

କାପ୍ତାନ୍—ଆଚ୍ଛା ! ବେଶ୍, ସେ ତ ଭଲକଥା, କଣ କହିବ କୁହ ?

ସିଲ୍‌ଭର—ଆମେ ଯେଉଁ ରତ୍ନର ସନ୍ଧାନରେ ଆସିଛୁ, ସେ କୌଣସି ପ୍ରକାରରେ ସେ ରତ୍ନ ଲାଭକରିବାକୁ ପଡ଼ିବ। ମୁଁ ଅଭୟ ଦେଉଛି—ଆପଣମାନଙ୍କ ଜୀବନ ନିରାପଦ। ଆପଣମାନଙ୍କ ଉପରେ ଆଉ ଅତ୍ୟାଚାର କରିବୁନାହିଁ। ବର୍ତ୍ତମାନ ଶୁଣନ୍ତୁ—ଆପଣଙ୍କ ନିକଟରେ ଗୋଟିଏ ଚାର୍ଟ ଅଛି, ନୁହେଁ ?

—'ଥାଇ ପାରେ।'

—'ଥାଇ ପାରେ ନୁହେଁ। ଆମର ଜାଣୁ ଚାର୍ଟଟିଏ ଅଛି। ସେହି ଚାର୍ଟଟି ଆମକୁ ଦେବାକୁ ପଡ଼ିବ। ଆମ୍ଭମାନଙ୍କ ପକ୍ଷରୁ କୌଣସି ବିପଦର ଆଶଙ୍କା ନାହିଁ। କେବଳ ଚାର୍ଟଟି ଦେଇଦିଅନ୍ତୁ।' କାପ୍ତାନ୍ ସ୍ମଲେଟ ତା କଥାରେ ବାଧାଦେଇ କହିଲେ —"ପ୍ରାଣ ଗଲେ ମଧ୍ୟ ଚାର୍ଟ ଦେବୁନାହିଁ। ତୁମର ଯାହା ଇଚ୍ଛା କରିପାର। ଆମେ ତମକୁ ଡରିନାହୁଁ।" ଏହା କହି ଅବିଚଳିତ ଭାବରେ ସିଲ୍‌ଭର ମୁହଁକୁ ଅନାଇଁ ରହିଲେ।

ସିଲ୍‌ଭର କିଛିକ୍ଷଣ ନୀରବ ରହିଲା। ତା ପରେ କହିଲା, "ଚାର୍ଟଟା ଦେବାକୁ ପଡ଼ିବ। ତା ନ ହେଲେ ରତ୍ନ କେଉଁଠି ଅଛି ଜାଣିବେ କିପରି ? ଚାର୍ଟଟା ଦିଅନ୍ତୁ ଏବଂ ତା ପରେ ଜାହାଜରେ ଲୋକମାନଙ୍କୁ ଗୁଳି କରି ମାରି ଦିଅନ୍ତୁ। ମୋର କୌଣସି ଆପତ୍ତି ନାହିଁ। ସବୁ ଗୋଳମାଳ ମଧ୍ୟ ତୁଟିଯିବ। ଯଦି ମୋର କଥା ଅନୁସାରେ କାମ କରିବେ, ତେବେ ମୁଁ ଆପଣଙ୍କର ଅନିଷ୍ଟ କରିବି ନାହିଁ। ଆପଣଙ୍କୁ ନିରାପଦରେ ନେଇଯିବି। ବହୁତ ଅର୍ଥ ମଧ୍ୟ ଦେବି।"

କାପ୍ତାନ୍ କହିଲେ—"ମୋର କଥା ଶୁଣ ! ତୁମେମାନେ ସମସ୍ତେ ଜଣ ଜଣ ହୋଇ ମୋ ନିକଟରେ ଧରାଦେଲେ ମଧ୍ୟ ମୁଁ କାହାକୁ ହତ୍ୟା କରିବି ନାହିଁ। କେବଳ ବନ୍ଦୀ କରି ଇଂଲଣ୍ଡକୁ ସୁବିଚାର ନିମନ୍ତେ ପଠାଇ-ଦେବି। ଯଦି ଧରା ନ ଦିଅ, ତୁମମାନଙ୍କର ମୃତ୍ୟୁ ସୁନିଶ୍ଚିତ। ମୁଁ କିଏ ଜାଣ ? ନାମ ଆଲେକ୍‌ଜାଣ୍ଡାର ସ୍ମଲେଟ୍। ସରକାରୀ ପୋଷାକ ତ୍ୟାଗକରି ମୁଁ

ସାଧାରଣ ପୋଷାକ ପରିଧାନ କରୁଛ । ତୁମେ କଦାପି ରତ୍ନଲାଭ କରି-ପାରିବ ନାହିଁ । ତୁମେ ଜାହାଜ ମଧ୍ୟ ଏଠାରୁ ନେଇ ଚାଲିଯାଇ ପାରିବ ନାହିଁ ? ଯଦି ପାର, ତେବେ ଆସ ଆମ୍ଭ ସହିତ ଯୁଦ୍ଧକର ।

## ପ୍ରତ୍ୟକ୍ଷ ଆକ୍ରମଣ

ସିଲ୍‌ଭର ମନପ୍ରାଣଦେଇ କାପ୍ତାନ୍‌ଙ୍କର କଥା ଶୁଣୁଥିଲା । କୌଣସି ଉତ୍ତର ଦେଉନାହିଁ ତାର ଚକ୍ଷୁ ଜବାଫୁଲ ପରି ରକ୍ତବର୍ଣ୍ଣ ଦେଖା ଯାଉଥାଏ । ମନକୁ ମନ ଗଡଗଡ଼ ହୋଇ ସେ କାପ୍ତାନ୍ ସ୍ମଲେଟ୍‌ଙ୍କ ସମ୍ମୁଖରୁ ଚାଲିଗଲା । ରାଗରେ କହିଗଲା—' ବେଶ୍, ଘଣ୍ଟାକ ମଧ୍ୟରେ ତମର ଦଫା ରଫା କରିଦେବ ।

ସିଲ୍‌ଭର ଅଦୃଶ୍ୟ ହୋଇଯିବାର ଦେଖି କାପ୍ତାନ୍ ଚିତ୍କାର କରି କହିଲେ ସାବଧାନ, ସାବଧାନ, ଯେ ଯାହାର ସ୍ଥାନରେ ସ୍ଥିର ହୋଇ ଠିଆ ହୁଅ; ସେ ଦଳବଳ ଧରି ଆସୁଅଛି । ଆମ୍ଭମାନଙ୍କ ଅପେକ୍ଷା ସେମାନେ ଯେ ସଂଖ୍ୟାରେ ବହୁତ ବେଶି ଏଥିରେ କୌଣସି ସନ୍ଦେହ ନାହିଁ । ତେବେ ଆମର ଏତିକ ସୁବିଧା ଯେ ଆମେ ଦୁର୍ଗ ମଧ୍ୟରେ ଥାଇ ଯୁଦ୍ଧ କରିବୁ । ଡାକ୍ତର, ତୁମେ ଦରଜା ପାଖେ ଠିଆ ହୋଇ ଦେଖ; କିନ୍ତୁ ସାବଧାନ—ତୁମକୁ ଯେପରି କେହି ଦେଖି ନ ପାରନ୍ତି । ହାଣ୍ଟର ତୁମେ ପୂର୍ବପଟ ରକ୍ଷାକର । ଆଉ ଯୋଏଷ୍ଟ, ତୁମର ପଶ୍ଚିମ ପାଖ । ଟ୍ରେଲ୍‌ନି, ତୁମେ ବନ୍ଧୁକରେ ସବୁଠାରୁ ଭଲ ଲକ୍ଷ୍ୟ କରିପାର । ତେଣୁ ଉତ୍ତରପଟେ ତମେ ହିଁ ରହିବ । ବିପଦ ଏଇ ଦିଗରେ ଅଧିକ । ଜିମ୍, ତମେ ଆଉ ମୁଁ ବନ୍ଧୁକରେ ଗୁଳି ଭର୍ତ୍ତି କରିବା । କାରଣ ଆମ ଦୁହିଁଙ୍କୁ ଭଲଭାବରେ ଗୁଳିମାରି ଆସେନାହିଁ ।

ଆମେ ଯୁଦ୍ଧ ନିମନ୍ତେ ପ୍ରସ୍ତୁତ ହୋଇ ନିଜ ନିଜ ସ୍ଥାନରେ ରହିଲୁ । ପ୍ରାୟ ଏକଘଣ୍ଟା ଅତୀତ ହୋଇଗଲା । ହଠାତ୍ ଯୋଏଷ୍ଟ କହି ଉଠିଲା—"ଆଜ୍ଞା, ଲୋକ ଦେଖିଲେ ଗୁଳି କରିବ ତ ?"

କାପ୍ତାନ୍ କହିଲେ—ନିଶ୍ଚୟ, ଏଥିରେ କୌଣସି ସନ୍ଦେହ ଅଛି ?

ଯୋଷୀ ଧନ୍ୟବାଦ କହି ତତ୍‌କ୍ଷଣାତ୍ ଗୁଳିକଲା । ସଙ୍ଗେ ସଙ୍ଗେ ବିପକ୍ଷ ଦଳରୁ ମଧ୍ୟ ଗୁଳି ବର୍ଷଣ ହେଲା । ଆମ୍ଭେମାନେ ମଧ୍ୟ ବିପରୀତ-ପାର୍ଶ୍ୱରୁ ଗୁଳି ବର୍ଷଣ କରିବାକୁ ଲାଗିଲୁ । କିନ୍ତୁ ସମସ୍ତ ପର୍ଯ୍ୟନ୍ତ ଗୋଳାଗୁଳି ବର୍ଷଣ ଚାଲିଲା । ପୁଣି ସବୁ ନିସ୍ତବ୍ଧ ହୋଇଗଲା ।

କାପ୍ତାନ୍ ପଚାରିଲେ—ଯୋଷୀ, ତୁମର ଗୁଳିରେ ଶତ୍ରୁ ଆହତ ହୋଇଛନ୍ତି କି ?

'ଠିକ୍ ରୂପେ କହିପାରିବ ନାହିଁ ଆଜ୍ଞା, ବୋଧହୁଏ ନୁହେଁ ।'

'ଆଚ୍ଛା, ଡାକ୍ତର. ତମେ ଚଟକୁ କେତେଜଣ ପୁଳିକଲେ କହି-ପାରିବ ?'

'ଖୁବ୍ ସମ୍ଭବ, ଦୁଇ ତିନି ଜଣ ହେବେ । କାରଣ ଏକାଥରେ ତିନୋଟି ଆବାଜ ଶୁଣାଗଲା ।'

'ଆଚ୍ଛା, ଟ୍ରେଲନି, ତୁମ ଆଡ଼କୁ କେତେଜଣ ଆକ୍ରମଣ କରୁ-ଥିଲେ ?'

'ଠିକ୍ ରୂପେ କହିପାରିବ ନାହିଁ । ବୋଧହୁଏ ୭, ୮ ଜଣ ହେବେ ।'

ଏହି ସମୟରେ ପୁନର୍ବାର ଜଙ୍ଗଲ ମଧ୍ୟରୁ ଶତ୍ରୁମାନେ ଗୁଳି ବର୍ଷଣ କରିବାକୁ ଲାଗିଲେ । ପ୍ରବଳ ବେଗରେ ଯୁଦ୍ଧ ଚାଲିଲା । ଟ୍ରେଲନି ଓ ଗ୍ରେର ଗୁଳିରେ ଶତ୍ରୁପକ୍ଷର ତିନିଜଣ ଆହତ ହେଲେ । ସେମାନେ ଆମ ଦୁର୍ଗଆଡ଼କୁ ମାଡ଼ି ଆସିଲେ । ଅବସ୍ଥା ଅସମ୍ଭାଳ ହୋଇପଡ଼ିଲା । ପରିଶେଷରେ ବହୁତ କଷ୍ଟ ସହକାରେ ଆମର ବିଜୟ ହେଲା । ସହସା ଡାକ୍ତର ଚିତ୍କାର କଲେ "ଘରୁ ନିଆଁ ଉଠୁଛି—ପ୍ରାଣ ରକ୍ଷା କର ।" ମାତ୍ର ପରିଶେଷରେ ହଣ୍ଟର ଓ ଯୋଷୀ ଆଘାତ ପାଇ ମରିଗଲେ । କାପ୍ତାନ୍ ଦେହରେ ଗୋଟାଏ ଗୁଳି ବାଜି ସେ ଭୀଷଣଭାବରେ ଆଘାତପ୍ରାପ୍ତ ହେଲେ । ଆମେ ତାଙ୍କୁ ଧରାଧରି କରି ଆଣିଲୁ । ମୋର ମଧ୍ୟ ସାମାନ୍ୟ ଆଘାତ ଲାଗିଥିଲା । ଡାକ୍ତର ତାଙ୍କୁ ପ୍ଲାଷ୍ଟର କରିଦେଲେ ।

ଶତ୍ରୁପକ୍ଷର ପାଞ୍ଚଜଣ ଯୁଦ୍ଧରେ ମରିଗଲେ । ଯେଉଁମାନେ ଜୀବନ ମୂର୍ଚ୍ଛାରେ ପଳାଇଗଲେ ସେମାନେ ଆଉ ଆକ୍ରମଣ କରିବାକୁ ଆସିଲେ ନାହିଁ । ମିଃ ଟ୍ରେଲ୍‌ନୀଙ୍କ ଗୁଳିରେ ଆଘାତପ୍ରାପ୍ତ ଆଉଜଣେ ଦସ୍ୟୁ ମଧ୍ୟ ପ୍ରାଣ ହରାଇଲା । ସେମାନେ ସର୍ବମୋଟ ଆଠଜଣ ରହିଲେ ।

## ବିପଦକୁ କୋଡ଼ ବଢ଼େଇଲି

ଯୁଦ୍ଧର ପରଦିନ ଦ୍ୱିପ୍ରହରରେ ଡାକ୍ତର ଲିଭେସି ହାତରେ ପିସ୍ତଲ ଧରିଲେ, ଅଣ୍ଟାରେ ତରବାରୀ ଝୁଲାଇ ପକେଟରେ ବ୍ଲୁଚିଟି ପୂରାଇ ଦୁର୍ଗରୁ ବାହାରି ଜଙ୍ଗଲ ଆଡ଼କୁ ଗଲେ । ତାହା ଦେଖି ଗ୍ରେ କହିଲା, "ଡାକ୍ତର ଲିଭେସି, ପାଗଳ ହେଲେ ନା କ'ଣ ? ଏପରି ସମୟରେ ଜଙ୍ଗଲ ମଧ୍ୟକୁ ଏକା କିଏ ଯାଏ ?" ମୁଁ କହିଲି—"ନା—ନା ଡାକ୍ତର ! ପାଗଳପରି କାମ କରିବେନାହିଁ । ମୋର ମନେ ହୁଏ ସେ ବୋଧହୁଏ ବେନ୍‌ଗନକୁ ଖୋଜିବାକୁ ଗଲେ ।"

ଗ୍ରେ ସଙ୍ଗେ କିଛି ସମୟ କଥାବାର୍ତ୍ତା କରି ମୁଁ ସ୍ଥିରକଲି ଯେ କାହାକୁ କିଛି ନ କହି ମୁଁ ମଧ୍ୟ ବଣ ଭିତରକୁ ଚାଲିଯିବି । ସୁଯୋଗ ଆସି ଉପସ୍ଥିତ ହେଲା । ମୁଁ ଚୁପ୍‌ଚାପ୍ ଖସିଗଲି । ଦୁଇ ପକେଟ ଭର୍ତ୍ତିକରି ବିସ୍କୁଟ ନେଇଥାଏ । ରାସ୍ତାରେ ଯଦି ଭୋକ ହୁଏ କାମରେ ଆସିବ । ଆତ୍ମରକ୍ଷା ନିମନ୍ତେ ସାଥିରେ ବନ୍ଧୁକ ଓ ଗୁଳି ନେଲି । ପୂର୍ବଦିଗରେ ଦେଖାଯାଉଥିବା ଧଳା ପାହାଡ଼ ଆଡ଼େ ଛୁଟିବାକୁ ଲାଗିଲି । ବୋଧହୁଏ ଏଇ ପାହାଡ଼ ପାଖରେ ବେନ୍‌ଗନ୍ ତାର ନୌକାକୁ ଲୁଚାଇ ରଖିଛି । ପ୍ରାୟ ସନ୍ଧ୍ୟା ସମୟକୁ ଚାଲି ଚାଲି ସମୁଦ୍ର କୂଳରେ ପହଞ୍ଚିଲି । ପାହାଡ଼ରେ ଚଢ଼ିବାକୁ ଲାଗିଲି । ଏଇ ସମୟରେ ପାହାଡ଼ ଭିତରେ ଗୋଟିଏ ଗୁମ୍ଫା ଦେଖାଗଲା । ବେନ୍‌ଗନ୍‌ଠାରୁ ଶୁଣିଥିଲି ଯେ ଏଇ ଗୁମ୍ଫା ଭିତରେ ନୌକା ଅଛି । ତେଣୁ କାଳ ବିଳମ୍ବ ନ କରି ଗହ୍ୱର ଭିତରକୁ ଡେଇଁ ପଡ଼ିଲି । ଘରି ଛୋଟ ଓ ହାଲୁକା ଡଙ୍ଗାଟିଏ ଥିଲା । ଡଙ୍ଗାଟାକୁ କାନ୍ଧରେ ପକାଇ ଭାବିଲି ଏଥରତ ପଳାଇବାର ଉପାୟ ମିଳିଗଲା । ଯାଉଛି ଦୁଃସାହସିକ କାମ କରିବି । ହିସପ୍ୟାନିଓ୍ୟାଲ୍ ଲଙ୍ଗର ପକାଇ ଅଛି । ଯଦି ଲଙ୍ଗର କାଟି ପାରେ ଶତ୍ରୁମାନଙ୍କର ବିପଦର ସୀମା ରହିବନାହିଁ । ଏହି ପ୍ରକାର

ଅଭିପ୍ରାୟ ରଖି ରାତ୍ରିର ଅନ୍ଧକାରକୁ ଅପେକ୍ଷା କରି ବସି ରହିଲି ଓ ମନବୋଧ କରି ବିସ୍କୁଟ ଖାଇଦେଲି । ଠିକ ସମୟ ଦେଖି ନୌକାରେ ବସି ପାଲ ମେଲ ଦେଲି; ମାତ୍ର ସେ ନୌକାଟି ଏତେ ଶ୍ରେଷ୍ଠ ଓ ହାଲୁକା ଯେ ସମ୍ଭାଦଗଲୁ ଚଳାଇନେବା ପ୍ରାୟ ଦୁଃସାଧ୍ୟ କହିଲେ ଚଳେ । ଖାଲି ଏ ପଟକୁ ସେପଟ ବାଙ୍କି ଯାଉଥାଏ । ଯାହାହେଉ, ବହୁ କଷ୍ଟରେ ଜାହାଜର ପଛ ପାଖରେ ପହଞ୍ଚିଲି । ବେଶ ଅନ୍ଧକାର ହୋଇ ଯାଇଥାଏ । ଆକାଶ ମେଘରେ ଢାଙ୍କି ହୋଇ ଯାଇଥାଏ । ଜାହାଜରେ କୌଣସି ଲୋକ ଦେଖାଯାଉ ନ ଥାନ୍ତି । କେବଳ ଦୁଇଜଣ ଶତ୍ରୁଙ୍କ ସ୍ୱର ଶୁଣାଯାଉଥାଏ । ସେମାନେ ଯୁକ୍ତିତର୍କ କରୁଥାଆନ୍ତି । ମୋର ଛାତି ଧଡଧଡ଼ ହେଉଥାଏ, ଚହି ମତେ କିଏ ଦେଖି ଦେବ, ତେବେ ? ସେ ଯାହାହେଉ ମୁଁ ଏ ସୁଯୋଗରେ ଜାହାଜର ମୋଟା ଦଉଡ଼ି କାଟିବାକୁ ଲାଗିଲି; ମାତ୍ର ଏହାର ପରିଣାମ କଅଣ ହେବ ଭାବୁଛି ସହସା ସାମୁଦ୍ରିକ ସ୍ରୋତର ପ୍ରବଳ ପ୍ରବାହ ହିସପ୍ୟାନିଓ୍ୟାଲକୁ ଭସାଇ ନେଲା । ମୋ ମନ ମଧ୍ୟ ଆନନ୍ଦରେ ଭାସିବାକୁ ଲାଗିଲା; କିନ୍ତୁ କଣ ହେବ ଝଡ଼ ମୁହଁରେ ପଡ଼ି ମୋ ନୌକା ମଧ୍ୟ ତୃଣଖଣ୍ଡ ପରି ଭାସିବାକୁ ଲାଗିଲା । ମୁଁ ଭାସୁଛି । ତୀରରେ ପହଞ୍ଚିବା ସମ୍ଭବ ନୁହେଁ । ସମୁଦ୍ରର ମଝିରେ ଆସି ପଡ଼ିଗଲି । ସବୁ ହିସାବ ମୋର ଭୁଲ ହୋଇ-ଗଲା । ସ୍ରୋତ ଓ ଢେଉ ମୁଖରେ ପଡ଼ି ମୁଁ ନିରୁପାୟ । ଇଚ୍ଛାନୁସାରେ ନୌକା ଚଳାଇବାର ସାଧ୍ୟ ମୋର କାହିଁ ? ଅଗତ୍ୟା ମୁଁ ହାତ ଗୁଡ଼ି ଦେଲି । ନୌକା ତା ମନ ଖୁସିରେ ଚାଲିବାକୁ ଲାଗିଲା । ଏଭଳି ସମ-ୟରେ ସହସା ହିସପ୍ୟାନିଓ୍ୟାଲା ଭାସିଯାଉ ଥିବାର ଦେଖାଗଲା । ଭଲ-ଭାବରେ ନଜର ଦେଇ ଦେଖିଲି । କ୍ୟାବିନ କମ୍ୱା ଜାହାଜରେ କେହି ଲୋକନାହାଁନ୍ତି । ମୁଁ ନୌକା ବାହି ହିସ୍ପ୍ୟାନିଓ୍ୟାଲା ନିକଟକୁ ଗଲି । ତଥାପି କାହାକୁ ଦେଖିପାରିଲି ନାହିଁ । ଯାହାହେଉ ଲୋକ ଥିଲେ ଥାଆନ୍ତୁ —ନୌକାରୁ ଆସି ଜାହାଜରେ ଆଶ୍ରୟ ନେବା ଭଲ । ଶ୍ରେଷ୍ଠ ଡଙ୍ଗା କେତେବେଳେ ବୁଡ଼ିଯିବ ଠିକଣା ନାହିଁ । ଏହାପରେ ଭାବ ଜାହାଜକୁ ଚଢ଼ିଗଲି । କ୍ୟାବିନ ଭିତରେ ତିନି ଚାରିଜଣ ଲୋକ କ୍ଷତବିକ୍ଷତ ହୋଇ ମରି ପଡ଼ିଛନ୍ତି । ଚାରିଆଡ଼େ ଭଙ୍ଗା ବୋତଲ । ମୁଁ ବୁଝିପାରିଲି ଯେ ସାରା ରାତି ମାତଲାମି ଓ ହଣାକଟା ଚାଲିଥିଲା । ଆଉ ମଧ୍ୟ ଦେଖିଲି ଯେ

ଗୁପ୍ତଧନ ଖୋଜିବା ପାଇଁ ସେମାନେ ବାକ୍ସର ଡାଳା ସବୁ ଭାଙ୍ଗି ପକାଇ- ଛନ୍ତି । ହାଣ୍ଟର ବଞ୍ଚିଥିଲା; ମାତ୍ର ମୋର ସେବା ଶୁଶ୍ରୂଷା ସତ୍ତ୍ୱେ ଅଳ୍ପ ସମୟ ମଧ୍ୟରେ ପ୍ରାଣ ହରାଇଲା ।

ଜାହାଜ ଭାସି ଭାସି ଚାଲିଛି । ବହୁତ ସମୟ ପରେ ପୁଣି ଦ୍ୱୀପର ଗୋଟାଏ ପାଖରେ ଜାହାଜ ଲାଗିଲା । ମୁଁ ଓହ୍ଲାଇ ପଡ଼ିଲି । ବଡ଼ କ୍ଳାନ୍ତ ଓ ଦୁର୍ବଳ ହୋଇ ପଡ଼ୁଥାଏ । ବହୁ କଷ୍ଟରେ ଦୁର୍ଗର ଫାଟକ ପାଖକୁ ଗଲି । ଭିତରେ ଆଲୁଅ ନାହିଁ, ସବୁ ଅନ୍ଧକାର । ଭାବିଲି ସମସ୍ତେ ଶୋଇ ପଡ଼ିଛନ୍ତି । ଭିତରକୁ ଯିବାକୁ ବାହାରୁଛି ସହସା କାହାର ଗୋଡ଼ ଝୁଣ୍ଟି ପଡ଼ିଲି । ହଠାତ୍ କର୍କଶ ସ୍ୱରରେ ଶୁଆଟାଏ ଚିତ୍କାର କରି ଉଠିଲା "ଆଠଖଣ୍ଡି—ଆଠଖଣ୍ଡି ।"

ଶୁଆର ଚିତ୍କାର ଶୁଣିପାରି ମୁଁ ଭାବିଲି —ହେ ଭଗବାନ—ଏ ତ ସିଲ୍‌ଭରର କ୍ୟାପଟାନ୍ ଫ୍ଲିଣ୍ଟ । କଣ କରିବି ! ଶତ୍ରୁମାନଙ୍କ ଭିତରେ ପଡ଼ିଗଲି । ଆମର ଲୋକମାନେ ନିଶ୍ଚୟ ଅନ୍ୟଆଡ଼େ ପଳାଇଛନ୍ତି । ବିଷମ ବିପଦ ଉପସ୍ଥିତ । ପକ୍ଷୀର ଚିତ୍କାରରେ ଶତ୍ରୁମାନେ ଉଠି ବସିଲେ । ମତେ ପଳାଇ ଯିବାର ପଥ ମିଳିଲାନାହିଁ । ସିଲ୍‌ଭର ଗର୍ଜ୍ଜନ କରି କହିଲା— କିଏ ଯାଉଛିରେ ?

ମୁଁ ଧାଇଁବାକୁ ଯାଇ ଜଣେ ଲୋକ ଦେହରେ ଧକ୍‌କା ଖାଇ ଆଉ ଜଣକ ହାତ ଉପରେ ପଡ଼ିଗଲି । ସେ ମତେ ବଜ୍ରମୁଷ୍ଟିରେ ଧରି ଚିତ୍କାର କରି ଡାକିଲା, 'ଡିକ୍, ଗୋଟାଏ ଆଲୁଅ ଆଣ ତ ?' କଣ୍ଠସ୍ୱର ଶୁଣି ଜାଣିଲି ଯେ ଏ ସିଲ୍‌ଭର ।

ଏଇ ସମୟରେ ଜଣେ ଲୋକ ଟର୍ଚ୍ଚ ଧରି ପହଞ୍ଚିଲା । ଟର୍ଚ୍ଚର ଲାଲ ଆଲୁଅରେ ଘର ଆଲୋକିତ ହୋଇଗଲା । ମୁଁ ଦେଖିଲି ଯେ ଆମ- ଦଳର କୌଣସି ଲୋକ ନାହାନ୍ତି । ସମସ୍ତେ ଶତ୍ରୁପକ୍ଷ ବୁଝିପାରିଲି । ଆମର ଦୁର୍ଗ ସେମାନେ ଦଖଲ କରିଛନ୍ତି । ଆମ ଦଳର ଲୋକେ ନିଶ୍ଚୟ ପ୍ରାଣ ହରାଇଛନ୍ତି । ମୁଁ ମଧ୍ୟ ଶତ୍ରୁ ହସ୍ତରେ ବନ୍ଦୀ । ପଳାଇବାର ରାସ୍ତା ନାହିଁ । ଶୁଆଟି ସିଲ୍‌ଭରର କାନ୍ଧରେ ବସିଥାଏ । ସିଲ୍‌ଭରର ପୋଷାକ କାଦୁଅରେ ଅପରିଷ୍କାର ଦେଖା ଯାଉଥାଏ ।



( ଥରେ ମାତ୍ର ଝାଙ୍କା ଦେଖିଲ ସେଠକ ଘଃଅଷ୍ଟ )

ସିଲଭର ମୋ ଅଡକୁ କଟମଟ କରି ଗୁହିଁ କହିଲା, "ଓହୋ—ଜିମ୍ ହାଓକିନ, ମୁଁ ତମକୁ ପ୍ରଥମରୁ ଦେଖି ବୁଝିପାରିଛି ଯେ ତୁମେ ଭାରି ଚତୁର ପିଲା । ମୁଁ ତୁମକୁ ଭାରି ଭଲ ପାଏ । ତୁମେ ମୋ ହେତୁରେ ଟୋକା ହୋଇଛ; ନା ? ତଥାପି—ମୁଁ ତୁମକୁ ଏବେ ମଧ୍ୟ ଭଲପାଏ । ତୁମର ଆମ ଦଳରେ ମିଶିବା ଉଚିତ୍ । ତାଛଡ଼ା ତୁମର ଅନ୍ୟ ଉପାୟ ନାହିଁ । ସିଲ୍‌ଭର ସାଙ୍ଗରେ ତୁମକୁ ରହିବାକୁ ପଡ଼ିବ ।

ସିଲ୍‌ଭରର କଥାଶୁଣି ବୁଝିଲି ଯେ ଅନ୍ୟଦଳର ଲୋକେ ମରି-ନାହାନ୍ତି । ତଥାପି ମନରେ ଦୃଢ଼ଭୂମି ବିଶ୍ୱାସ ହେଉ ନ ଥାଏ ।

ସିଲ୍‌ଭର ପୁଣି କହିଲା—ବର୍ତ୍ତମାନ ତୁମ ଜୀବନ ମୋ ହାତ ମୁଠାରେ; କିନ୍ତୁ ମୁଁ ତୁମକୁ ମାରିପାରିବ ନାହିଁ । ଭୟ ମଧ୍ୟ ଦେଖାଇବି ନାହିଁ । ତୁମେ ଇଚ୍ଛାକଲେ ଆମଦଳରେ ମିଶିପାର । ଆମଦଳରେ ଯୋଗଦେବ କି ନାହିଁ ଭଲଚିନ୍ତା କରି ନିର୍ଭୟରେ କହିପାର ।

ମୁଁ କହିଲି—"ମୋର କଣ ଉତ୍ତର ଦେବା ନିହାତି ଦରକାର ନ ହେଲେ ନ ଚଳେ ? ଯଦି ସେହି କଥା ହୁଏ, ତେବେ ପ୍ରଥମେ ମୁଁ ଶୁଣିବାକୁ ଗୃହେଁ, ତୁମେ ଏଠାକୁ କିପରି ଆସିଲ, କାହିଁକି ଆସିଲ ? ଆମର ବନ୍ଧୁମାନେ କେଉଁଆଡ଼େ ଗଲେ ?"

ସିଲ୍‌ଭର କହିଲା, "କାଲି ସକାଳେ ଡାକ୍ତର ଲିଭେସି ସନ୍ଧି ପତାକା ଉଡ଼ାଇ ଦେଇ ଜଣାଇଲେ ଯେ ଜାହାଜ ଯଥା ସ୍ଥାନରେ ନାହିଁ । ଜାହାଜ ନ ମିଳିଲେ ସମସ୍ତଙ୍କର ବିପଦ । ଆମ୍ଭେ ଜାହାଜ ଖୋଜିବାକୁ ରାଜି ହେଲୁନାହିଁ । ତେଣୁ ସ୍ଥିର ହେଲା ଯେ ଦୁର୍ଗ ଆମର ହେବ । ଯଦି ଜାହାଜ ମିଳେ, ସେଥିରେ ସେମାନେ ଚଢ଼ି ପାରିବେ । ଆମର ଚଢ଼ି ପାରିବାର ଅଧିକାର ନାହିଁ । ସେଥିପାଇଁ ଆମେ କିଲ୍ଲା ନେଲେ ହେଲୁ । ସେମାନେ ଜାହାଜ ଖୋଜୁଛନ୍ତି । ତୁମପାଇଁ ଅପେକ୍ଷା ନ କରି ତୁମକୁ ଛାଡ଼ିଦେଇ ସେମାନେ ଚାଲିଗଲେ । ଚାଲିବେଳେ କହିଲେ—ଜିମ୍ ମରୁ କି ବଞ୍ଚୁ ଆମର କିଛି ଯାଏଆସେ ନାହିଁ ।

ସେ ଗୋଟାଏ ପାଜି ବଦମାସ ପିଲା । ତାକୁ ଛାଡ଼ିଦେଲେ ଆମର ମଙ୍ଗଳ ହେବ ।"

ସିଲ୍‌ଭରର କଥା ଶେଷ ହେବାରୁ ମୁଁ କହିଲି "ମୁଁ କାପ୍ତେନ ତୁମ ଦଳରେ ମିଶିବି ନାହିଁ । ପ୍ରାଣଯାଉ ପଛେ ମୋର ସେଥିକି ଭୟ ନାହିଁ । ମନର ଡର ଭୟ ଭୁଲି ମୁଁ କହୁଛି ତୁମର ଅଶେଷ ବିପଦ । ଧନଗଲା, ଜନଗଲା, ଜାହାଜ ଗଲା, ଏତେ ପରିଶ୍ରମ କରି ଏତେଦୂର ଆସିବା ମଧ୍ୟ ବ୍ୟର୍ଥ ହେଲା । ଜାଣିବାକୁ ଚାହିଁ ଏଏ କାହାର କାମ ? ତେବେ ଜାଣିରଖ, ଏକା ମୁଁ ଏ କାର୍ଯ୍ୟ କରିଅଛି । ହେଣ୍ଟ ଗ୍ରେଣ୍ଟ ବୋଟର ଦଉଡ଼ି ମୁଁ କାଟିଛି । ସେ ବୋଟକୁ ଏମିତି ଜାଗାରେ ଲୁଚାଇ ରଖିଛି ଯେ ତୁମେ କେହି ତାକୁ ପାଇପାରିବ ନାହିଁ । ତା ପାଖକୁ ନ ଆସିଲେ ତମେ ଦ୍ୱୀପଛାଡ଼ି ଚାଲିଯାଇ ପାରିବନାହିଁ । ତୁମେ ଯଦି ମତେ ବଞ୍ଚାଇବ, ତେବେ ମୁଁ ତୁମକୁ ବଞ୍ଚାଇବି । ଯଦି ଜୀବନରେ ମାରି ଦିଅ, ତମେ ମଧ୍ୟ ଦ୍ୱୀପରେ ପଡ଼ି ରହି ମରିବ । ଏବେ ଭାବ—ମତେ ରଖିବ କି ମାରିବ ?"

ମୋ କଥା ବନ୍ଦ ହେବା ସଙ୍ଗେ ସଙ୍ଗେ ସିଲ୍‌ଭର ଦଳର ଜଣେ-ଲୋକ, ତା ନା ମରଗ୍ୟାନ; ଛୁରୀ ଖୋଲି ଚାଟିକରି ଉଠିଲା. ମାର ମାର ଏଇ ଟୋକା ଚାର୍ଟ ରଖିଛି ତାକୁ ମାରିଲେ ଚାର୍ଟ ମିଳିବ, ନଚେତ୍ ମିଳିବ ନାହିଁ ।"

ସିଲ୍‌ଭର ମରଗ୍ୟାନକୁ ଧମକଦେଇ କହିଲା, "ଚୁପ୍‌ରହ, ତୁ ମାରିବାକୁ କିଏ ? ତା ଦେହରେ ହାତ ଦେଇପାରିବୁ ନାହିଁ । ହାତ ଦେଲେ ତୋ ପାଇଁ ଯମଘର ଦୁଆର ମେଲା ହେବ, ବୁଝିଲୁ ?" ମରଗ୍ୟାନ ଅଟକିଗଲା; କିନ୍ତୁ ଦଳର ସମସ୍ତେ ରାଗରେ ଗର ଗର ହେବାକୁ ଲାଗିଲେ । ଜଣେ କହି ଉଠିଲା—ସିଲ୍‌ଭରକୁ ଆମେ ଡରନାହୁଁ, ମଲେ ମରିବା । ଟୋକାଟାର ଛାତିରେ ଛୁରୀ ଭୁଷିଦିଅ ।"

ଆରେ ସିଲ୍‌ଭରକୁ ଡରନାହିଁ ? ଆଚ୍ଛା—ଆସିଲ ଦେଖି, କିଏ ଆସିବ ଆଗେଇ ଆସ । 'ଧର ଖଣ୍ଡା' ଏହା କହି ସିଲ୍‌ଭର ଭୀଷଣ ମୂର୍ତ୍ତି ଧାରଣ କଲା । ତାକୁ ଦେଖି ସମସ୍ତେ ଭୟରେ ଅଟକିଗଲେ । କାହାରି ତୁଣ୍ଡରୁ କଥା ବାହାରିଲା ନାହିଁ । ଏହା ଦେଖି ସିଲ୍‌ଭର କହିଲା, "ତୁମେ-

ମାନେ ସମସ୍ତେ ମିଶି ମତେ କାପ୍ତାନ୍ କରଛ; କାରଣ ତୁମମାନଙ୍କ ମଧ୍ୟରେ ମୁଁ ସବୁଠାରୁ ଶକ୍ତିଶାଳୀ । ତେଣୁ ମୋ କଥା ତୁମକୁ ମାନିବାକୁ ହେବ । ମୋର କଥା ହେଲା ଏଇ ବାଳକଟିର ଉପରେ ହେଲେ ଅନିଷ୍ଟ କରିପାରିବ ନାହିଁ । ମୁଁ ତାକୁ ସ୍ନେହ କରେ, ଏମିତି ଭଲ ପିଲା ମୁଁ ଆଜି ପର୍ଯ୍ୟନ୍ତ ଦେଖିନାହିଁ । ତାର ଯେଉଁ ସାହସ—ତାର ଶତେ ଭାଗରୁ ଭାଗେ ମଧ୍ୟ ତୁମ ପାଖେ ନାହିଁ । ବୁଝିଲ ? ତୁମେ ସବୁ ଖାଲି କାପୁରୁଷ !" କିଛିକ୍ଷଣ ପାଇଁ ସେ ସ୍ଥାନ ସ୍ତବ୍ଧ ହୋଇଗଲା ମୁଁ କାନ୍ଥକୁ ଆଉଜି ଠିଆ ହୋଇଥାଏ । ତାର ହାତ ଦୁଇଟା ଗୁଡ଼ ଉପରେ ଛନ୍ଦ ହୋଇଥାଏ । ଆଖି ଦୁଇଟା ଅସ୍ଥିର, ଘନ ଘନ କମ୍ପି ଉଠୁଥାଏ । ସିଲ୍ଭର ଦଳର ଲୋକମାନେ ଗୋଟି ଗୋଟି ହୋଇ ଧୀର ପଦକ୍ଷେପରେ ବାହାରିଗଲେ ।

ଶେଷରେ ମତେ ଏକୁଟିଆ ପାଇ ସିଲଭର କହିଲା 'ଦେଖିଲ ! ମୁଁ ତୁମର ଜୀବନ ରଖିଲି । ନଚେତ୍ ସେମାନେ ଆଜି ତମକୁ ଖତମ୍ କରି-ଦେଇଥାନ୍ତେ । ସିଲଭର ଯେମିତି ଜିମ୍‌କୁ ବିପଦରୁ ରକ୍ଷାକଲା, ଜିମ୍ ମଧ୍ୟ ସେଇଭଳି ସିଲଭରର ପ୍ରାଣ ରଖିବ, ଏଇ ମୋର ଆଶା ।

ଏହା କହି ସିଲ୍ଭର ଟିକିଏ ଭାବି ପୁଣି କହିଲା, 'ଜିମ୍, ମତେ ବୋକା ବୋଲି ଭାବନାହିଁ । ମୋ ମୁଣ୍ଡରେ ବୁଦ୍ଧି ଅଛି । ମୁଁ ବର୍ତ୍ତମାନ ସ୍ମୋଲେଟ୍‌ର ଦଳର ଲୋକ ହୋଇଗଲି; ମୋର ମନେହୁଏ ଜାହାଜ ଖଣ୍ଡିକ କଦାପି ହଜିଯାଇ ନାହିଁ । ତମେ ତାକୁ କୌଣସି ଆଡ଼ାରେ ଲୁଚାଇ ରଖିଛ । ଆଛା ଜିମ୍ ସେ କଥା ଥାଉ । ଆଉ ତୁମକୁ ଗୋଟିଏ କଥା ପଚାରିବାକୁ ପଡ଼ିବ । କହିଲ, ଡାକ୍ତର ମତେ ନକ୍ସା ଖଣ୍ଡ ଦେଇଥିଲେ କାହିଁକି ?" ଏହା କହି ନକ୍ସାଖଣ୍ଡ ମୋ ଆଗରେ ଖୋଲିଦେଲା । ନକ୍ସାଖଣ୍ଡ ଦେଖି ମନେମନେ ମତେ ଭାରି ଆଶ୍ଚର୍ଯ୍ୟ ଲାଗିଲା । ଡାକ୍ତର ଏଭଳି କାମ କଲେ କାହିଁକି ? କିଛି ମୋ ମୁଣ୍ଡରେ ପଶିଲା ନାହିଁ । ଏ ତ ସତକୁ ସତ ଫ୍ଲିଣ୍ଟର ନକ୍ସା ।

ସିଲ୍ଭର ମୋ ମୁହଁକୁ ଚାହିଁ କହିଲା—"ଭଲ ହେଉ ବା ମନ୍ଦ ହେଉ, ନକ୍ସା ଦେବାର ନିଶ୍ଚୟ କିଛି ଉଦ୍ଦେଶ୍ୟ ଅଛି ।"

ଦସ୍ୟୁମାନେ ବାହାରକୁଯାଇ ବଡ଼ୁଷକ ଧଡ଼ କ'ଣ ଗୋଟାଏ ଷଡ଼୍‌ଯନ୍ତ୍ର କରୁଥା'ଥା'ନ୍ତି । ତାପରେ ସେମାନଙ୍କ ମଧ୍ୟରୁ ଜଣେ ଘର ଭିତରକୁ ଆସି ସିଲ୍‌ଭରକୁ ଅଭିବାଦନ ଜଣାଇ କହିଲା "ଟିକିଏ ଦୟାକରି ବସନ୍ତୁ, ଦୁଇ ମିନିଟ ପରେ ଫେରିଆସିବୁ ।"

ସିଲ୍‌ଭର ଝିଙ୍କେ କହିଲା । କଥା କହିସାରିବା ପରେ ଘର ଅନ୍ଧକାର ହୋଇଗଲା । ମୁଁ ସେ ଅନ୍ଧାରରେ କାନ୍ଥରେ ଥିବା କଣାବାଟେ ବାହାରକୁ ଚାହିଁ ରହିଲି—ସେମାନେ ଆଲୁଅ ନେଇ କଣ କରୁଛନ୍ତି ? ଦେଖିଲି, ସେମାନେ ଦଳବାନ୍ଧି ସାମନାକୁ ଝୁଙ୍କି ହୋଇ ଠିଆ ହୋଇଥାନ୍ତି । ଜଣେ ଲୋକ ମଝିରେ ଆଣ୍ଠୁମାଡ଼ି ବସିଥାଏ । ତା ହାତରେ ଗୋଟାଏ ଖୋଲା ଦାଢ଼ୁଆ ଛୁରୀ ଜହ୍ନ ଆଲୁଅରେ ଚକ୍ ଚକ୍ ଦିଶୁଥାଏ । ସେମାନେ ଦସ୍ୟୁ, ଲୋକର ପ୍ରାଣ ନେବା ତାଙ୍କର ପେଶା । ସେମାନେ ହୁଏତ ମତେ ମାରି ପକାଇବେ, ସିଲ୍‌ଭରକୁ ହତ୍ୟା କରିବେ; କିନ୍ତୁ ଏ କଣ ? ଗୋଟିଏ ହାତରେ ଛୁରୀ ଅନ୍ୟ ହାତରେ ଧର୍ମପୁସ୍ତକ ବାଇବେଲ । ଯେଉଁମାନେ ହତ୍ୟା କରନ୍ତି, ସେମାନଙ୍କର ବାଇବେଲ କଣ ଦରକାର ? ମୁଁ ଅବାକ୍ ହୋଇଗଲି ।

*

ଯେଉଁ ଲୋକଟି ଆଣ୍ଠୁମାଡ଼ି ବସିଥିଲା, ସେ ପୁଣି ଧଡ଼ା ହୋଇ ଠିଆହେଲା । ସଙ୍ଗେ ସଙ୍ଗେ ସମୁଦାୟ ଦଳଟି ଆମର କକ୍ଷ ଆଡ଼କୁ ଅଗ୍ରସର ହେଲେ । "ହେଇଟି ସେମାନେ ଆସିଲେ" ମୁଁ ମୁହଁ ବୁଲାଇ ପୂର୍ବ ଅବସ୍ଥାରେ ବସି ରହିଲି । "ଆଚ୍ଛା, ଆଚ୍ଛା, ସେମାନଙ୍କୁ ଆସିବାକୁ ଦିଅ" ସିଲ୍‌ଭର ଖସି ମନରେ କହିଲା । ଦ୍ୱାର ଖୋଲିଯିବା ସଙ୍ଗେ ସଙ୍ଗେ ପାଞ୍ଚ ଜଣ ଲୋକ ଠେଲାପେଲି ହୋଇ ଘରେ ପଶିଲେ । ଜଣେ ଲୋକକୁ ସିଲ୍‌ଭର ଆଡ଼କୁ ଠେଲିଦେଲେ । ସେ ଧୀରେ ଧୀରେ ପାଦ ପକାଇ ଆସୁଥାଏ । ତାହାର ହାତମୁଠା ଜୋରରେ ମୁଠାଇଥାଏ । ଏହା ଦେଖି ସିଲ୍‌ଭର କହି ଉଠିଲା, "ଆରେ ଏ ଟୋକା, ପାଖକୁ ଆ; ଭୟ କଣ ? ମୁ କଣ ତୋତେ ଗିଳିଦେବି ? କଣ ଆଣିଛୁ ହାତରେ ଦେଖା । ତୁ ଏମାନଙ୍କର ଦୂତ, ମୁଁ କଣ ତୋତେ ମାରିବି ! ମୁଁ ଜଳଦସ୍ୟୁମାନଙ୍କ କାନୁନ ଜାଣେ

ସିଲ୍‌ଭରର କଥାରେ ସାହସ ପାଇ ସେ ଲୋକଟି ନିକଟକୁ ଆସି ଚଟ୍‌କରି ସିଲ୍‌ଭର ହାତକୁ କାଗଜଖଣ୍ଡ ବଢ଼ାଇ ଦେଇ ନିଜ ଦଳରେ ମିଶିଗଲା ।

ସିଲ୍‌ଭର କାଗଜଖଣ୍ଡକୁ ନିରୀକ୍ଷଣ କଲା । ତା'ପରେ କହିଲା "ଓହୋ—ମୁଁ ଯାହା ଭାବୁଥିଲି ସେଇକଥା । ଏତ ଗୋଟାଏ କଳାଦାଗ ! ଏଠ କାଗଜ କାହୁଁ ମିଳିଲା ? ଆରେ ବାବା, ଏତ ଭଲ କଥା ନୁହେଁ—ବାଇବେଲର କାଗଜ କାଟି ଏ କାମ । ସର୍ବନାଶ, ଧର୍ମଗ୍ରନ୍ଥର ପୃଷ୍ଠା ନେଇ ଏଇ କାଣ୍ଡ କରିଅଛ । ଲେଖିବାକୁ ଆଉ ଜାଗା ମିଳିଲାନାହିଁ ସେପ ଶେଷକୁ ବାଇବେଲ ପୃଷ୍ଠା ଉପରେ । ଆରେ—ଆରେ—ଏ ମୂର୍ଖମାନଙ୍କୁ ଧର୍ମ ଛାଡ଼ିଲାଣି ମୂର୍ଖ! ଜଣେ କହିଲା—ଡିକ୍ ଡିକ୍ ପାଖରେ ଥିଲା ।

"କଣ କହୁଛରେ ? ଡିକ୍ ଡିକ୍ ପୁଣି କେବେଠାରୁ ପ୍ରାର୍ଥନା କରୁଛି ହେ ?" ଦଳ ମଧ୍ୟରେ ଜଣେ ସବୁଠାରୁ ଲମ୍ବା ଲୋକ ଥିଲା । ସେ କହି ଉଠିଲା,—ସିଲଭର, ଏସବୁ ବାଜେକଥା ରଖ । ଏମାନେ ସମସ୍ତେ ଏକମତ ହୋଇ ଏ କଳାଦାଗ ଲେଖିଛନ୍ତି ।ସେଇଟାକୁ ପଢ଼, ଅନ୍ୟ କଥା ପଛେ ।

ସିଲ୍‌ଭର କହିଲା ସେ ତ ଭଲ କଥା ଜର୍ଜ, କଳାଦାଗଟା ପଢ଼ୁଛ କଣ ଲେଖା ଅଛି ଦେଖିବା-ତୁମର ହାତଲେଖା ଜର୍ଜ । ବାଃ ଅବିକଳ ଛପା ଅକ୍ଷର । ଓ, ଏଥର ତୁମର କାପ୍ତାନ୍ ହେବାର ପାଳି । ଆଚ୍ଛା, ତୁମେ କାପ୍ତାନ୍ ହୁଅ ନା! ସମସ୍ତଙ୍କ ମନ ତୁମ ଆଡ଼କୁ ଢଳିଛି । କାପ୍ତାନ୍ ତୁମେ ହେବ, ଏଥିରେ ଆଶ୍ଚର୍ଯ୍ୟ ହେବାର ବା କ'ଣ ଅଛି ? ଜର୍ଜ କହିଲା-"ସିଲ୍‌ଭର ତେବେ ଭୁଲ ଆସ, ଭୋଟ ନିଆଯାଉ ।"

ସିଲଭର ବିଦ୍ରୂପ କରି କହିଲା—"ଯା—ଯା ନିୟମ ଦେଖାଉଛୁ-ଭାଗ ନିୟମ ମାନିଲାବାଲାଟା," ଏହାପରେ ରାଗିଯାଇ କହିଲା "ମୁଁ ତ କାପ୍ତାନ୍—କାହାର ସାହସ ହେବ ? ଆଉ ତୁମର ଏଇ କଳାଦାଗ, ମୁଁ ଏହାକୁ ଖାତିର କରେ ନାହିଁ । ଭାଗ ତ କଳା ଦାଗ ।" ଜର୍ଜ କହିଲା-"ସିଲ୍‌ଭର ମୁଁ ହସମ୍ଭାଳି କଥା କୁହ । ତୁମେ କାହିଁକି ଶତ୍ରୁକୁ ହାତମୁଠାରେ

ପାଇ ଗ୍ରହଣ କଲ ? ତୁମେ ଏହାର କ କୈଫିୟତ ଦେବ ? ସେମାନେ ପଳାଇ-ଗଲେ । ତା'ପରେ ସେମାନଙ୍କୁ ଧରିବାକୁ ତାଙ୍କ ପଛେ ପଛେ ଆମେ ଧାଇଁଲୁ । ସେଥିରେ ତୁମେ ବାଧାଦେଇ କହିଲ—କିଛି ଲାଭନାହିଁ, ଖାଲି ଧାଇଁବା ସାର ହେବ । ତୁମର କୌଶଳ ଆମେ ବୁଝିପାରିଛୁ । ତୁମେ ସେମାନଙ୍କ ସାଙ୍ଗରେ ଭାଗ ବସିବ, ଆଉ ଆମକୁ ଗୁଳିମାଡ଼ ଖାଇବ । ତୁମର ଏ କ'ଣ ଠିକ ହେଲା ? ଆହୁରି ଦେଖ ଏଇ ଜିମ୍ ଟୋକାଟାକୁ ବଞ୍ଚାଇ ରଖିଲ କାହିଁକି ? ଏ କି କଥା ?" ଏତିକି କହି ଜର୍ଜ ଚୁପ୍‌ହେଲା ।

ସଙ୍ଗେ ସଙ୍ଗେ ସିଲ୍‌ଭର ଖୁବ୍ ଗମ୍ଭୀର ଭାବରେ ପଚାରିଲା, "ଆଚ୍ଛା ଜର୍ଜ, ତୁମର ଯାହା ସବୁ ଅଭିଯୋଗ ଥିଲା, କହି ସାରିଲ ତ ? ନା ଅଉ କିଛି କହିବାର ଅଛି ?"

ଜର୍ଜ କହିଲା ଥାଉ ବା ନ ଥାଉ, ସେଥିରେ ଆଉ କି ପ୍ରୟୋଜନ ? ଯାହା କହିଲି ସେଇ ଯଥେଷ୍ଟ ।

ସିଲ୍‌ଭର ଧୀର ଭାବରେ କହିଲା—"ମୋର ସମସ୍ତ ଉତ୍ତର ଏଇ,—ନିଅ" କହି ସେ ଖଣ୍ଡେ କାଗଜ ତଳେ ଫିଙ୍ଗିଦେଲା । ମୁଁ କାଗଜ ଖଣ୍ଡକୁ ଚାହିଁ ଅବାକ ହୋଇଗଲି । ମୋର ଆଉ ବୁଝିବାକୁ ବାକି ରହିଲା-ନାହିଁ । ଏତ ସେଇ ଚାର୍ଟ । ହଳଦିଆ କାଗଜ । ତହିଁରେ ନାଲି ଦାଗ । ଏ ଚାର୍ଟ ଖଣ୍ଡ ତ କାପ୍ତାନ ବିଲି ବୋନସର ସିନ୍ଦୁକରୁ ପାଇଥିଲି । ଡାକ୍ତର ଏ ଚାର୍ଟ ଖଣ୍ଡିକ କାହିଁକି ସିଲ୍‌ଭରକୁ ଦେଲେ ? ଏହାର ଅର୍ଥ କଣ ?

ବିରାଡ଼ି ଯେମିତି ମୂଷା ଦେଖିଲେ ତା ଉପରକୁ ଡେଇଁ ପଡ଼େ, ସେହିପରି ସମସ୍ତେ ଏକସଙ୍ଗେ ଚାର୍ଟଟାକୁ ଝାମ୍ପିନେବାକୁ ବସିଲେ । ଆଗ ଦେଖିବାକୁ ଚାହାନ୍ତି । ଜଣ ଜଣ ହୋଇ ସମସ୍ତେ ଦେଖିଲେ । ଚାର୍ଟ ଧରିବାର ଭଙ୍ଗୀ ଦେଖି ମନେ ହେଉଥାଏ ସତେ ଯେପରି ସେମାନେ ସୁନାକୁ ସ୍ପର୍ଶ କରୁଛନ୍ତି ।

ଜଣେ କହିଲା, "ହଁ ହଁ, ଠିକ୍, ଏହା ତ ଫ୍ଲିଣ୍ଟର ଚାର୍ଟ, ତଳେ ତା ଦସ୍ତଖତ ରହିଛି ।"

ଜର୍ଜ କହିଲା -ବେଶ୍ ତ, କିନ୍ତୁ ଟଙ୍କା ପଇସା, ସୁନାରୁପା ନେଇ ଦେଶକୁ ଫେରିବା କିପରି ? ଆମର ତ ଜାହାଜ ନାହିଁ ।

ସିଲ୍‌ଭର ଉତ୍ତରଦେଲା, "ସେ ଦୋଷ ତୁମମାନଙ୍କର । ତୁମ ଦୋଷରୁ ଜାହାଜ ଗଲା । ମୋ ବୁଦ୍ଧିରୁ ରତ୍ନ ମିଳିଲା । ଏବେ କହ ତ, ଆମ ଭିତରେ କିଏ ବୁଦ୍ଧିଆ ? ମୁଁ ଏଇ ମୁହୂର୍ତ୍ତରୁ ତୁମକୁ କ୍ଷମତା ଦେଲି । ତୁମେ ତୁମର ଇଚ୍ଛା ଅନୁସାରେ କାପ୍ତାନ୍ ନିଯୁକ୍ତ କର । ମୋର 'ମନେ ହୁଏ' ଗ୍ରୀଙ୍କ ଯେତେବେଳେ ପାଇଲିଣି ଏ କଳାଦାଗର ଆଉ କିଛି ଅର୍ଥ ନାହିଁ ।

ଏହା କହି ସିଲ୍‌ଭର ମୋ ହାତକୁ କଳଦାଗ ଦିଆ କାଗଜ ଖଣ୍ଡିକ ବଢ଼ାଇଦେଲା । ମୁଁ ଦେଖିଲି ବାଇବେଲର ଶେଷ ପୃଷ୍ଠାରୁ ଖଣ୍ଡେ କାଗଜ ଚିରାହୋଇଛି । ଗୋଟାଏ ପାଖ ସାଧା, ଅପର ପାଖରେ କାଳି ଘଷି 'ପଦତ୍ୟାଗ' ଶବ୍ଦଟି ଲେଖାଯାଇଛି ।

ଗ୍ରୀଙ୍କପାଇଁ ସେମାନଙ୍କ ମନ ଖୁସି । ସମସ୍ତେ ଆନନ୍ଦରେ ଶୋଇ ପଡ଼ିଲେ; କିନ୍ତୁ ମୋ ଆଖିକୁ ନିଦ ଆସୁ ନ ଥାଏ ।

## ହାଇରେ କପାଳ

ସକାଳେ ନିଦରୁ ଉଠି ଶୁଣିଲି, ଡାକ୍ତର ଆସିଛନ୍ତି । ପ୍ରଥମେ ମନ ଆନନ୍ଦରେ ନାଚି ଉଠିଲା; କିନ୍ତୁ ପରମୂହୂର୍ତ୍ତରେ ମନରେ ଖେଳିଗଲା, ମୁଁ ଯେ ନିୟମ ଅମାନ୍ୟ କରି ଗୋପନରେ ପଳାଇ ଆସିଛି । ଏଥିରେ ଲଜ୍ଜା ଓ ଭୟରେ ମୋ ମୁଣ୍ଡ କଟିଗଲା ପରି ଲାଗିଲା । ହେ ଭଗବାନ୍ ! ଏମାନଙ୍କ ମଧ୍ୟରେ ମୋତେ ଦେଖି ସେ କଣ କହିବେ ?

ଡାକ୍ତର ଆସିଯିବା ସଙ୍ଗେ ସଙ୍ଗେ ସିଲ୍‌ଭର କହିଲା -"ଆମ ଦଳକୁ ଜଣେ ନୂଆ ଲୋକ ଆସିଛି । ଖାସା ଲୋକଟିଏ ।"

ଡାକ୍ତର ପଚାରିଲେ—"କିଏ ? ଜିମ୍ ନା କଣ ?"

ସିଲ୍‌ଭର କହିଲ୍ "ହଁ, ସେଇ ଜିମ୍, ଅବିକଳ ସେଇ ସ୍ୱଭାବ ଏବେ ମଧ୍ୟ ରହିଛି । ତା' ଯୋଗୁ ମୋର ବହୁତ ଉପକାର ହେଉଛି ।"

ଡାକ୍ତର କିଛି ସମୟ ନୀରବରେ ଠିଆହେଲେ । ତା'ପରେ କହିଲେ—"ଜିମ୍‌କୁ ପାଇ ପରେ ଆନନ୍ଦ ପ୍ରକାଶ କରିବା । ଆଗେ ରୋଗୀମାନଙ୍କୁ ଦେଖି ଆସିବା ଚାଲ ।"

ସିଲ୍‌ଭର ସଙ୍ଗେ ଡାକ୍ତର ରୋଗୀ ଦେଖିବାକୁ ଚାଲିଗଲେ । ମୁଁ ସେଇ ବାଟରେ ଠିଆ ହୋଇଥିଲି । ସେ ଟିକିଏ ମୁଣ୍ଡ ହଲାଇ ମୋତେ ଅଭିବାଦନ ଜଣାଇ ଦେଇଗଲେ ।

ମୁଁ ଦେଖିଲି ଯେ, ଡାକ୍ତର ନିର୍ଭୟରେ ନିହ୍‌ ରୋଗୀମାନଙ୍କ ଘରେ ପଶି ସେମାନଙ୍କର ଅବସ୍ଥା ପରୀକ୍ଷା କଲେ । ଆବଶ୍ୟକମତେ ଔଷଧପତ୍ର ଓ ପରାମର୍ଶ ଦେଲେ ।

ଫେରିବାବେଳେ ମୋତେ ଦେଖି ଡାକ୍ତର ମୋ ସାଙ୍ଗରେ କଥାବାର୍ତ୍ତା ହେବାକୁ ଚାହିଁଲେ । ମାତ୍ର ଜର୍ଜ ଚିତ୍କାର କରି କହି ଉଠିଲା ।

ସିଲ୍‌ଭର ଜର୍ଜ ଆଡ଼କୁ ଚାହିଁ ଗର୍ଜି ଉଠିଲା, "ରହ – ଚୁପ୍‌କର ।" । ପୁଣି ଡାକ୍ତରଙ୍କୁ କହିଲା; "ଆମେ ସମସ୍ତେ ଆପଣଙ୍କ ନିକଟରେ ଋଣୀ । ଆପଣଙ୍କ ଠାରେ ବିଶ୍ୱାସ ରଖି ଆମେ ଔଷଧ ଖାଉଛୁ ।

ତା'ପରେ ମୋତେ ଚାହିଁ, "ହାଓକିନ୍‌, ତୁମେ ଜଣେ ଶ୍ରେଷ୍ଠ ଭଦ୍ରଲୋକ ଭାବରେ କଥା ଦେବ କି ? କଥା ରଖିବ ତ ?"

ମୁଁ ସମ୍ମତି ଜ୍ଞାପନ କଲି ।

ସିଲ୍‌ଭର କହିଲ୍—"ଡାକ୍ତର, ଆପଣ ଜିମ୍‌ ସଙ୍ଗେ କଥାବାର୍ତ୍ତା ହେବେ କିନ୍ତୁ ଏଠାରେ ନୁହେଁ । ଆପଣ ଦୁର୍ଗ ବାହାରେ ଅପେକ୍ଷା କରନ୍ତୁ । ମୁଁ ଜିମ୍‌କୁ ନେଇ ସେଠାକୁ ଯାଉଛି ।"

ଡାକ୍ତର କିଛି ଦୂରରେ ବାଲି ଉପରେ ମୋ ପାଇଁ ଅପେକ୍ଷାକରି ବସିଲେ । ସିଲ୍‌ଭର କିଛିକ୍ଷଣ ପରେ ମୋତେ ନେଇ ସେଠାକୁ ଗଲା । ସେଠାରେ ପହଞ୍ଚି କହିଲା, "ଡାକ୍ତର, ମନେ ରଖନ୍ତୁ, ମୁଁ ଏଇ ବାଳକର ଜୀବନ ରକ୍ଷାକରିଛି । ମୁଁ ନଥିଲେ ଏମାନେ ନିଶ୍ଚୟ ଏହାକୁ ଜୀବନରେ ମାରି ଦେଇଥାନ୍ତେ । ଏ କଥା ଏ ବାଳକ ନିଜେ ମଧ୍ୟ ସ୍ୱୀକାର କରିବ । ଏହାକୁ ବଞ୍ଚାଇବାକୁ ଯାଇ ମୁଁ ବିପଦକୁ ଡାକି ଆଣିଛି । ଆମଦଳର ସମସ୍ତେ ମୋ ଉପରେ ଖଡ୍‌ଗହସ୍ତ । ମୁଁ ବିଦେଦଗ୍ରସ୍ତ । ଏ ପିଲାର ଜୀବନ ମଧ୍ୟ ନିରାପଦ ନୁହେଁ । ଯେ କୌଣସି ମୂହୂର୍ତ୍ତରେ ଏହାକୁ ହତ୍ୟା କରାଯାଇ-ପାରେ । ତେଣୁ ଆପଣଙ୍କର ଦୟାଭିକ୍ଷା କରୁଛି । ଆମ ଦୁହିଁଙ୍କୁ ଆପଣଙ୍କ ସଙ୍ଗେ ଯିବାକୁ ଦିଅନ୍ତୁ । ମୁଁ ବର୍ତ୍ତମାନ ଏମାନଙ୍କ ଦଳ ଛାଡ଼ିଦେବାକୁ ପ୍ରସ୍ତୁତ । ଡାକ୍ତର ! ମୁଁ ସ୍ୱୀକାର କରୁଛି, ଆପଣ ଭାରି ସଜ୍ଜନଲୋକ ! ଆପଙ୍କ ପରି କୋଟିକରେ ଗୋଟିଏ ମିଳିବା କଷ୍ଟକର । ଆପଣ କଦାପି ଅସ୍ୱୀକାର କରିବେନାହିଁ ଯେ ମୁଁ ମଧ୍ୟ ଆପଣଙ୍କର ଉପକାର କରିଛି । ବର୍ତ୍ତମାନ ଜିମ୍ ଆପଣଙ୍କ ପାଖରେ ରହିଲା । ନିରୋଳରେ ଜିମ୍‌କୁ ଯାହା କିଛି କହି-ବାର କହନ୍ତୁ । ମୁଁ ଗଛରିପାଖରେ ଶତ୍ରୁମାନଙ୍କୁ ପହରା ଦେଉଛି ।"

ଏହା କହି ସିଲ୍‌ଭର ଗୋଟିଏ ଗଛତଳେ ଠିଆହୋଇ ଶତ୍ରୁଆଡକୁ ନିରୀକ୍ଷଣ କରିବାକୁ ଲାଗିଲା ।

ମୋତେ ଏକୁଟିଆ ପାଇ ଡାକ୍ତର କହିଲେ—"ବଡ଼ ଦୁଃଖର ବିଷୟ, ତୁମ ସାଥିରେ ମୋର ଏଇଠି ଦେଖାହେଲା । ସବୁ ଭାଗ୍ୟଦୋଷ । ତୁମକୁ ଆଉ କଣ କହିବ ? ଖାଲି ଏତିକି କହୁଛି, କାପ୍ତାନ୍ ସ୍ମୋଲେଟ ସୁସ୍ଥ ଥିଲାବେଳେ ତୁମେ ଖସି ଆସିବାକୁ ସାହସ ପାଇଲ ନାହିଁ । ସେ କାର୍ଯ୍ୟ ଥିବା ଅବସ୍ଥାରେ ତୁମେ ପଳାଇଗଲ ଏହା କିନ୍ତୁ କାପୁରୁଷର ଅସୁସ୍ଥ ହେଲ ।"

ମୋ ଆଖି ଲୁହରେ ଭରିଗଲା । ମୁଁ କହିଲି—"ଡାକ୍ତର, ମୋର ବହୁତ ଅପରାଧ ହୋଇଛି । ଇଚ୍ଛାକଲେ ଆପଣ ମୋତେ ପ୍ରାଣରେ ମାରିଦେଇ ପାରନ୍ତି । ମୁଁ ତ ମରିବାକୁ ଯାଉଥିଲି । ସିଲ୍‌ଭର ଦୟା;

ସେ ମୋର ଜୀବନ ରଖିଛି, ଡ଼ାକ୍ତର ! ବିଶ୍ୱାସ କରନ୍ତୁ, ମୃତ୍ୟୁକୁ ମୋର ଭୟ ନାହିଁ । ମୁଁ ମରିବାକୁ ପ୍ରସ୍ତୁତ । ମୁଁ ଯେଉଁ ଅନ୍ୟାୟ କରିଛି, ତାର ଉପଯୁକ୍ତ ଶାସ୍ତି ମୃତ୍ୟୁ । ମୁଁ କିନ୍ତୁ ନିର୍ଯ୍ୟାତନାକୁ ଭୟକରେ । ଯଦି ସେମାନେ ମୋତେ ଯନ୍ତ୍ରଣା ଦିଅନ୍ତି···

'ତା' କେବେ ହେଲେ ହୋଇପାରିବ ନାହିଁ । ଗ୍ରଲ ଆମେ ହରିଣ ପରି ଏଠାରୁ ଦୌଡ଼ି ପଳାଇବା ।"

ମୁଁ କହିଲି—"ନା, ମୁଁ କଦାପି ପଳାଇବି ନାହିଁ । ମୋତେ ସିଲ୍‌ଭର ବିଶ୍ୱାସ କରେ; ମୁଁ କଥା ଦେଇଛି, ତା ପାଖକୁ ଫେରିଯିବି । ବିଶ୍ୱାସଘାତକତା କରିବି କିପରି ? କିନ୍ତୁ ଡାକ୍ତର, ଆପଣ ମୋର କଥା ଶେଷ କରିବାକୁ ଦିଅନ୍ତୁ । ମୁଁ କହୁଥିଲି ଯେ ସେମାନେ ଯଦି ମୋତେ ଯନ୍ତ୍ରଣା ଦିଅନ୍ତି, ତେବେ ମୁଁ ହୁଏତ ଜାହାଜକଥା କହିଦେଇପାରେ । ଜାହାଜଟି ମୋ ହାତରେ ଅଛି । ଜୀବନକୁ ବିପନ୍ନ କରି ମୁଁ ଜାହାଜଟି ପାଇଛି । ଦକ୍ଷିଣ ଖାଡ଼ରେ ଠିକ ପାଣିତଳେ ସେଇଟି ଅଛି ।"

"ଏ, କଣ କହୁଛ ? ଜାହାଜ !" ଏହା କହି ଡାକ୍ତର ପ୍ରାୟ ଆନନ୍ଦରେ ଡେଇଁ ପଡ଼ିଲେ କହିଲେ ତଳେ ।

ମୁଁ ସଂକ୍ଷେପରେ ସବୁକଥା ଡାକ୍ତରଙ୍କୁ କହିଲି । ସେ ମନୋଯୋଗ ସହକାରେ ସବୁ ସ୍ଥିରହୋଇ ଶୁଣିଲେ, ତାପରେ କହିଲେ, 'ବାସ୍ତବିକ, ଆଶ୍ଚର୍ଯ୍ୟ କଥା ।ମୁଁ ଦେଖୁଛି ପ୍ରତିପଦରେ ମାନ ଜୀବନକୁ ତୁମେ ହିଁ ରକ୍ଷା-କରୁଛ । ଏ ଅବସ୍ଥାରେ ତୁମ ଜୀବନକୁ ଆମେ ରକ୍ଷା ନ କରିବୁ କିପରି ? ତୁମକୁ ମୃତ୍ୟୁମୁଖରେ ପକାଇ ଦେଲେ ଆମର ଘୋର ପାପ ହେବ । ତୁମେ ବେନ୍‌ଗନ୍‌କୁ ଖୋଜି ବାହାର କରିଛ ସବୁଠାରୁ ଭଲ କାମ କରିଛ । ଏହାଠାରୁ ବଡ଼ କାମ ଆଉ କଣ ହୋଇପାରେ ? ହୁଁ, ଧେତ୍, ବେନ୍‌ଗନ୍‌ର କଥା କଣ କହୁଛ, ଥାଉ ।" ଡାକ୍ତର କଣ କହିବାକୁ ଯାଉଥିଲେ । କଥାଟାକୁ ବୁଲାଇ ନେଇ ଚିତ୍କାର କରି ଡାକଲେ —"ସିଲ୍-ଭର, ସିଲ୍‌ଭର !" ସିଲ୍‌ଭର ତତ୍‌କ୍ଷଣାତ ଉପସ୍ଥିତ ହେଲା । ସିଲ୍‌ଭରକୁ ଦେଖି ଡାକ୍ତର କହିଲେ, "ଦେଖ ସିଲ୍‌ଭର ! ରତ୍ନ ଲାଭ କରିବାକୁ ବେଶି ବ୍ୟସ୍ତ ହୁଅନାହିଁ ।"

ସିଲ୍‌ଭର କହିଲା "ଯେତେଦୂର ସମ୍ଭବ, ଅତି ଶୀଘ୍ର ତାହା ପାଇବାକୁ ଚେଷ୍ଟା କରିବ । ନ କରିବ କାହିଁକି ? ଏହି ରତ୍ନଲାଭ ଉପରେ ମୋର ଓ ଜିମ୍‌ର ଜୀବନ ନିର୍ଭର କରୁଛି; କିନ୍ତୁ ଡାକ୍ତର, ମୁଁ ବୁଝିପାରୁନାହିଁ, ଆପଣ ଏକଥା ଭାବରେ ମୋତେ ଚେଷ୍ଟା ଦେଲେ କାହିଁକି ?"

ଡାକ୍ତର କହିଲେ—"ଯାହା କରିଛି, ସେହି ଯଥେଷ୍ଟ । ସେ ସମ୍ପର୍କରେ ଆଉ ବେଶି କିଛି କହିପାରିବ ନାହିଁ । ତୁମକୁ ଏତିକି ଆଶ୍ୱାସନା ଦେଉଛି ମୁଁ ଯଦି ଶତ୍ରୁ ହାତରୁ ବଞ୍ଚିଥାଏ, ତେବେ ତୁମକୁ ବଞ୍ଚାଇବା ପାଇଁ ପ୍ରାଣପଣେ ଉଦ୍ୟମ କରିବ ।

ସିଲ୍‌ଭର ମୁହଁଟାଲ ଦୋଇଗଲା । ସେ କହିଲା—"କଣ କହିଲେ ? ଆଉ କିଛି କହିପାରିବେ ନାହିଁ ?"

"ନା, ଏଇ ଚେଷ୍ଟା ଦେଇଛି ଯଥେଷ୍ଟ ଦୟାକରିଛି, କେବଳ ଗୋଟିଏ କଥା କହୁଛି । ଏହି ବାଳକକୁ ପାଖେ ପାଖେ ରଖ । ତୁମର ଖୁବ ଉପକାର କରିବ । ନମସ୍କାର ।" ଏହା କହି ଡାକ୍ତର ମୁହଁ ବୁଲାଇ ବୃକ୍ଷଗହଳରେ ଚାଲିଗଲେ ।

ଡାକ୍ତର ଚାଲିଯିବା ପରେ ମୋ ଆଡ଼କୁ ଚାହିଁ ସିଲ୍‌ଭର କହିଲା "ଜିମ୍, ମୁଁ ତୁମର ଜୀବନ ରକ୍ଷାକରିଛି । ତୁମେ ମଧ୍ୟ ମୋ ଜୀବନ ରକ୍ଷାକଲ, ଏକଥା ମୁଁ କେବେ ହେଲେ ଭୁଲିପାରିବ ନାହିଁ । ଚାଲ, ଆମେ ରତ୍ନ ଉଦ୍ଧାର କରିବାକୁ ବାହାରି ପଡ଼ିବା । ତୁମେ ଓ ମୁଁ ପାଖାପାଖି ରହିବା—କେବେ ହେଲେ ବିଚ୍ଛିନ୍ନ ହେବା ନାହିଁ ।"

ଏହି ସମୟରେ ଜଣେ ଲୋକ ଆସି କହିଲା, "ସିଲ୍‌ଭର ! ରନ୍ଧା ସରିଲାଣି, ଆମେ ଖାଇବାକୁ ଯାଉଛୁଁ ।

ଦଳର ସମସ୍ତେ ବାଲି ଉପରେ ଧାଡ଼ ହୋଇ ବସିଲେ । ପେଟପୂରା ଖାଇସାରିବା ପରେ ସିଲ୍‌ଭର କହିଲା, "ବନ୍ଧୁଗଣ, ମୁଁ ଯାହାଚାହିଁଥିଲି ତା

ପାଇଛୁ । ଗୁପ୍ତଖଣି ମୋ ହାତରେ, କିନ୍ତୁ ଜାହାଜଟି ସେମାନଙ୍କର ହାତରେ ଅଛି । ସେମାନେ କେଉଁଠି ଜାହାଜ ଖଣ୍ଡି ରଖିଛନ୍ତି ଜାଣେନାହିଁ । ପ୍ରଥମେ ରତ୍ନ ଉଦ୍ଧାର କରିବା । ତା ପରେ ଏଣେ ତେଣେ ଧାଇଁ ଜାହାଜ ଉଦ୍ଧାର କରିବାକୁ ପଡ଼ିବ । ଆମ ଭିତରୁ ଯିଏ ଜାହାଜ ଉଦ୍ଧାର କରିବ ସେହି ରତ୍ନଲାଭ କରିବ ।"

ଏହି କଥା ବନ୍ଧୁମାନଙ୍କୁ ଜଣାଇ ସିଲ୍‌ଭର ପୁଣି କହିଲା, "ଜିମ୍ ଯେଉଁମାନଙ୍କୁ ଭଲପାଏ, ସେ ଯେଉଁ ଦଳର ଲୋକ ହୋଇଥାଉନା କାହିଁକି ସେମାନଙ୍କ ସଙ୍ଗେ ଜିମ୍‌ର କଥାବାର୍ତ୍ତା ବନ୍ଦ । ଆଜି ସେ ଡାକ୍ତର ସଙ୍ଗେ ଶେଷଥର ପାଇଁ କଥାବାର୍ତ୍ତା ହେଲା । ମୋର ଅସଲ କାମଟି ମୁଁ ଜାଣିନେଇଛି । ଜାହାଜ ସେମାନଙ୍କ ପାଖରେ ଅଛି, ଏଣୁ ମୁଁ ଜିମ୍‌କୁ ଧନ୍ୟବାଦ ଦେଉଛି । ରତ୍ନ ଖୋଜିବାକୁ ଗଲାବେଳେ ଜିମ୍‌କୁ ମୁଁ ପାଖେ ପାଖେ ରଖିବି । ଆମେ ଯେତେବେଳେ ରତ୍ନ ଓ ଜାହାଜ ଉଭୟେ ପାଇବା, ସେତେବେଳେ ସମୁଦ୍ରରେ ପାଲ ମେଲିଦେବା । ଜିମ୍‌କୁ ମଧ୍ୟ ରତ୍ନର କିଛି ଅଂଶ ଦେବା ।"

ଜଳଦସ୍ୟୁମାନେ ସିଲ୍‌ଭରର କଥା ଶୁଣି ଖୁବ୍ ଖୁସିହେଲେ । ମୋର ପ୍ରାଣ କିନ୍ତୁ ଭୟରେ କମ୍ପିବାକୁ ଲାଗିଲା । ସିଲ୍‌ଭର ବଡ଼ ଭୟଙ୍କର ଲୋକ । ଦୁଇ ଦଳର ମନ ଜଗି ଚଳୁଛି ! ଦୁଇ ଦଳକୁ ହାତମୁଠାରେ ରଖିଲାଣି । ସେ ପ୍ରଥମେ ରତ୍ନ ଖୋଜୁଛି, ଯଦି ସେ ରତ୍ନ ପାଏ, ଦସ୍ୟୁମାନଙ୍କୁ ନେଇ ଜାହାଜରେ ପଳାଇବ । ଯଦି ରତ୍ନ ନ ପାଏ ଡାକ୍ତର ଲିଭେସିଙ୍କ ଦଳରେ ମିଶି ପ୍ରାଣ ବଞ୍ଚାଇବ ।

ମୁଁ ମନେମନେ ଭାବିଲି—ରତ୍ନ ନପାଇ ଡାକ୍ତରଙ୍କ ଦଳରେ ମିଶିବା ମତଲବଟା ଯଦି ଦସ୍ୟୁମାନେ ଟେର ପାଆନ୍ତି, ତେବେ କି ଭୀଷଣ ବିପଦ ନ ଘଟିବ ? ମତେ ଓ ସିଲ୍‌ଭରକୁ ପ୍ରାଣ ବଞ୍ଚାଇବା ନିମନ୍ତେ ଏମାନଙ୍କ ସଙ୍ଗେ ଯୁଦ୍ଧ କରିବାକୁ ପଡ଼ିବ । ସେ ତ କମ କଥା ନୁହେଁ । ସିଲ୍‌ଭର ଖୋଡ଼ା, ମୁଁ ସମାନ୍ୟ ବାଳକ ମାତ୍ର । ସେମାନେ ପାଞ୍ଚଜଣ ବଳବାନ୍ ଦସ୍ୟୁ । ଚିନ୍ତାରେ ମୋର ମନ ଅସ୍ଥିର ହୋଇଉଠିଲା । ଏହି ଚିନ୍ତାଭିତରେ ପୁଣି ମନେ ପଡ଼ିଲା, ଏହାର ଅର୍ଥ କଣ ? ମୋର ବନ୍ଧୁମାନେ

ଏମାନଙ୍କ ହାତରେ ଦୁର୍ଗଟା ଛାଡ଼ିଦେଇଗଲେ କାହିଁକି ? ଏସବୁ ଅଜବ କାଣ୍ଡର କୂଳ କିନାରା ନ ପାଇ ମୋ ମୁଣ୍ଡ ଘୂରିବାକୁ ଲାଗିଲା ।

ଯାହାହେଉ ଅଧିକ ବିଳମ୍ବ ନିଷ୍ପ୍ରୟୋଜନ । ଗ୍ରନ୍ଥରେ ଥିବା ନାଲି ଦାଗରୁ କିଛି ଠିକ୍ କରିବା ସମ୍ଭବ ନୁହେଁ । ଗ୍ରନ୍ଥ ପଛର ଲେଖା ଦେଖି ଅର୍ଥ ବୁଝିବା ସହଜସାଧ୍ୟ ମଧ୍ୟ ନୁହେଁ । ଏହି ପ୍ରକାର ଲେଖାଅଛି—ଲମ୍ବା ଗଛ ସ୍ପାଇଗ୍ଲାସର ଶୀର୍ଷ, ଉତ୍ତର ଦିଗରେ ନିର୍ଦ୍ଦେଶ କରୁଛି, ସ୍କେଲିଟନ ଦ୍ୱୀପ ଦକ୍ଷିଣ ପୂର୍ବ କୋଣ । ଦଶଫୁଟ ।

ଆମେମାନେ ଯାଉ ଯାଉ ଗୋଟିଏ ଅଧିତ୍ୟକାର ସମ୍ମୁଖରେ ପହଞ୍ଚିଲୁ । ସେହି ଅଧିତ୍ୟକା ଉପରେ ଖୁବ୍ ବଡ଼ ନାନା ପ୍ରକାର ଅସଂଖ୍ୟ ବୃକ୍ଷ ଅଛି । ଯେଉଁଗୁଡ଼ିକ ଅଧିକ ଉଚ୍ଚ, ସେଗୁଡ଼ିକ ପ୍ରାୟ ୫୦ ଫୁଟ ହେବ । ଏହି ସବୁ ଗଛ ମଧ୍ୟରୁ ସେହି ନିର୍ଦ୍ଦିଷ୍ଟ ଗଛଟିକୁ ଚିହ୍ନିବା କଷ୍ଟକର । ଅଧିତ୍ୟକାର ଉପରକୁ ନ ଉଠି କିଛି ସ୍ଥିର କରିବା ଅସମ୍ଭବ । ପାଖରେ ସ୍ପାଇଗ୍ଲାସ ଦେଖାଗଲା । ପାହାଡ଼ ତଳେ ଖୁବ୍ ଝରଣାଟିଏ ବହି ଯାଉଛି । ଆମେ ଝରଣା ପାରହୋଇ ପାହାଡ଼ ଉପରକୁ ଉଠିଲୁ । ସେଠାରେ ଘନ ଅରଣ୍ୟ । କାଦୁଅରେ ପରିପୂର୍ଣ୍ଣ । ଚଢ଼ିବାରେ ବହୁତ ସମୟ ବିତିଗଲା । ଯେତିକି ଉପରକୁ ଉଠୁଥାଉ ସେତିକି ପାହାଡ଼ ଦେଖା ଯାଉଥାଏ । ଗୋଡ ତଳେ ବଡ଼ ପଥର । ଉପରକୁ କମ ଜଙ୍ଗଲ ଥାଏ । ଜାଗାଟା ଭାରିସୁନ୍ଦର । ଚାରିଆଡ଼େ ଫୁଲଗଛ । ଫୁଲର ବାସ୍ନାରେ ଚାରିଆଡ଼ ମହକି ଉଠୁଥାଏ । ଆମ ଦଳର ଲୋକେ ଏଣେ ତେଣେ ଡେଇଁବାକୁ ଲାଗିଲେ । ଭାରି ସୁନ୍ଦର ସ୍ଥାନ । ମୁଁ ଓ ସିଲ୍‌ଭର ପଛରେ ରହିଥାଉ । ସିଲ୍‌ଭର ଖୁବ୍ଟା ଗୋଡରେ ଶୀଘ୍ର ଚାଲି ପାରୁ ନଥାଏ । ମୁଁ ତ ତା ସାଥିରେ ବନ୍ଧା; କ'ଣ କରିବ ? ମୁଁ ତାର ହାତ ଧରି ଟାଣି ନେଉଥାଏ । ମୁଁ ନ ଧରିଥିଲେ ତାର ଗୋଡ଼ ଖସି ସେ ପଡ଼ିଯାଆନ୍ତା । ଏହିପରି ଆମେ ଅଧ ମାଇଲ ବାଟ ଗଲୁ । ଆଉ ଟିକିଏ ଉଠିଥିଲେ ପାହାଡ଼ର ଶୀର୍ଷ ଦେଶରେ ପହଞ୍ଚି ଥାଆନ୍ତୁ; ଏହି ସମୟରେ ଆମ ଦଳର ଯେଉଁ ଲୋକଟା ବାଁ ଆଡ଼େ ଯାଉଥିଲା,

ସେ ଚକ୍କାର କରି ଉଠିଲା ଖୁବ୍ ଜୋରରେ ଚକ୍କାର ହେବା ଶୁଣି ମନେ ହେଲା ବୋଧହୁଏ ସେ ଖୁବ୍ ଡ଼ରି ଯାଉଛି । ସମସ୍ତେ ସେଇ ଆଡ଼କୁ ଦୌଡ଼ିଲୁ । ସେଠାରେ ମହାଶ୍ଚର୍ଯ୍ୟ ଦେଖିଲୁ ଯେ ଗୋଟାଏ ସୁନ୍ଦର ଓ ସୁଦୀର୍ଘ ପାଇନ ଗଛ ତଳେ ଗୋଟାଏ ନର କଙ୍କାଳ ପଡ଼ିଛି । ଗଛ ଲତାରେ ଗୁଡ଼େଇ ହୋଇ ଚ୍ଛେଟ ଚ୍ଛେଟ ହାଡ଼ଗୁଡ଼ାକ ଶରୀରରୁ ଅଲଗା ହୋଇ ପଡ଼ିଛି । ଭୂଇଁରେ ପୋଷାକ ସବୁ ଛିଣ୍ଡି କନା ଗଦା ହୋଇଛି, ଆମ ସମସ୍ତଙ୍କର ପ୍ରାଣ ଭୟରେ କାଠ ହୋଇଗଲା । ତଥାପି ଜର୍ଜ ମେରି ସାହସର ସହିତ ତା ନିକଟକୁ ଯାଇ ଛିଣ୍ଡା ପୋଷାକକୁ ଉଠାଇ ଦେଖିସାରିକହିଲା— "ଦେଖନ୍ତି ବୋଧହୁଏ କୌଣସି ଜଳଦସ୍ୟୁର ଛିଣ୍ଡା ପୋଷାକ ।"

ସିଲ୍‌ଭର କହିଲା—"ତା ନୁହେଁ ତ ଆଉ କଣ ? ଏଠାକୁ କ'ଣ ପାଦ୍ରୀ ରତ୍ନ ଖୋଜି କରିବାକୁ ଆସିବେ ?"

ମୃତ କଙ୍କାଳଟା ମାଟିରେ ପଡ଼ିଥାଏ । ପାଦ ଦୁଇଟାର ଠିକ୍ ବିପରୀତ ଦିଗରେ ମୁଣ୍ଡ ଉପର ଦେଇ ହାତ ଦୁଇଟା ଟେକ ହୋଇଥାଏ । ବୁଡ଼ାଳ ପାଣିରେ ବୁଡ଼ିଲାବେଳେ ଯେଉଁଭଳି ହାତ ଟେକିଥାଏ ସେହିଭଳି ।

ମୃତ କଙ୍କାଳଟା ଦେଖି ମୁଁ ମନେ ମନେ ଥରି ଉଠିଲି । ପାଟିରୁ କଥା ବାହାରିଲା ନାହିଁ ।

ସିଲ୍‌ଭର ପାଟି ଶୁଣି ଟିକଏ ଚେତାମଣିଲା, ସିଲ୍‌ଭର କହିଲା "ଏଭଳି ଭାବରେ ମଣିଷଟାକୁ ମାରିଦେବା ନିଶ୍ଚୟ ଫ୍ଲିଣ୍ଟର କାମ । ତା' ଭଳି ନିଷ୍ଠୁର ନ ହେଲେ ଏହା ଆଉ କେହି କରିବନାହିଁ । ଏଠାରେ ଫ୍ଲିଣ୍ଟର ଛ'ଜଣ ସାଥୀ ଥିଲେ । ସେ ଜଣ ଜଣ କରି ବୋଧହୁଏ ସମସ୍ତଙ୍କୁ ହତ୍ୟା କରନ୍ତି । ଏ କଙ୍କାଳଟା ଖୁବ ଲମ୍ବା, ବୋଧହୁଏ ଆଲାର ଡାଇସର ହୋଇଥିବ ମରଗାନ, ତୁମର ଡାଇସ କଥା ମନେଅଛି ନା ?

ମରଗାନ କହିଲା, "ହଁ ମନେ ଅଛି । ସେ ଥରେ ମୋ ପାଖରୁ ଟଙ୍କା ନେଇଥିଲା । ପୁଣି ମୋ ଛୁରି ଧରି କୂଳକୁ ଆସିଥିଲା ।

ସିଲ୍‌ଭର କହିଲା, "ଯାହା ହେଉ; ବର୍ତ୍ତମାନ ଫ୍ଲିଣ୍ଟ ମୃତ, ତେଣୁ ରକ୍ଷା । ସେ ବଞ୍ଚିଥିଲେ, ଆମ୍ଭମାନଙ୍କ ପକ୍ଷରେ ଏ ସ୍ଥାନ ଅତି ଭୟଙ୍କର ହୋଇ ଉଠିଥାନ୍ତା । ସେମାନେ ଛଅ ଜଣ ଥିଲେ, ଆମେ ମଧ୍ୟ ସେତିକି ଅଛୁ । ସେମାନଙ୍କର ଯେଉଁ ଦଶା ହେଲା, ଆମର ମଧ୍ୟ ସେହି ଦଶା ହୋଇଥାନ୍ତା ।"

ମରଗାନ—ହଁ, ଫ୍ଲିଣ୍ଟ ଯେ ମୃତ, ଏଥିରେ ସନ୍ଦେହ ନାହିଁ । ସେ ଧାଉଡ଼ିନାରେ ମଦ, ମଦ ହୋଇ ମଲା ।

ଜଣେ ଲୋକ କହିଲା—ହଁ, ନିଶ୍ଚୟ ମରିଛି, ମରି ପାତାଳକୁ ଗଲାଣି; କିନ୍ତୁ କିଏ କହିବ ତାର ପ୍ରେତାତ୍ମା ଏଠାରେ ନ ଥିବ ବୋଲି । ସେ ଯେପରି ମରିଛି, ସେଥିରେ ତା ଆତ୍ମା କଦାପି ଶାନ୍ତି ପାଇନଥିବ ।

ଆଉ ଜଣେ କହିଲା—ଠିକ୍ କଥା, ଭାରି ଖରାପ ଭାବରେ ସେ ମରିଥିଲା । କେବେ କେବେ ରାଗିଯାଇ ଭୟଙ୍କର ମୂର୍ତ୍ତି ଧାରଣ କରେ, ପୁଣି କେବେ ଧମକ ଦେଇ ମଦ ମାଗେ । କେବେ ଗୀତ ଗାଏ । ସେହି ପନ୍ଦରଜଣ ମାନବର ଗୀତ । ତା ମୁହଁରେ ଅନ୍ୟ ଗୀତ ନ ଥିଲା । ସେହି ପୁରୁଣା ସାମୁଦ୍ରିକ ସଙ୍ଗୀତ । ସେହି ଗୀତ ପବନ ସାଥିରେ ମିଶି ଏବେ ବି ଭାସି ଆସୁଛି ।

ସିଲଭର—ଯଥେଷ୍ଟ ହୋଇଯାଇଛି, ଆଉ ନାହିଁ । ବର୍ତ୍ତମାନ ଏହି ସବୁ କଥା ବନ୍ଦ କରି ଆସ ଆମେ ଆମ କାର୍ଯ୍ୟରେ ଅଗ୍ରସର ହେବା ।

ଆମେ ଅଗ୍ରସର ହେବାକୁ ଲାଗିଲୁ । ସମସ୍ତେ ଭୟରେ ଜାକିଜୁକି ହୋଇ ଚାଲୁଥାଉ । ଆମର ପାଟିତୁଣ୍ଡ ଗୋଳମାଳ ସବୁ ବନ୍ଦ ହୋଇଗଲା । କେହି ବଡ଼ପାଟିରେ କଥା ମଧ୍ୟ କହୁ ନ ଥାଉ । ମୃତ ଜଳଦସ୍ୟୁଙ୍କୁ ଦେଖି ଦେହ ଓ ମନ ଭୟରେ କମ୍ପି ଉଠୁଥାଏ ।

ଟିକେ ସିଲ୍‌ଭରକୁ ବିଶ୍ରାମ ଦେବା ନିମନ୍ତେ ଆମେ ପାହାଡ଼ ଉପରକୁ ଯାଇ କିଛିକ୍ଷଣ ପାଇଁ ବସିରହିଲୁ । ସମ୍ମୁଖରେ ସ୍ପାଇଗ୍ଲାସ । ଯେଉଁଆଡ଼େ ଚାହିଁବ ଖାଲି ଆକାଶ ଓ ସମୁଦ୍ର; ଚତୁର୍ଦ୍ଦିଗ ନିର୍ଜନ । ଖାଲି ଲହଡ଼ିମାଳାର ଶବ୍ଦ ଭାସି ଆସୁଥାଏ ।

ସିଲ୍‌ଭର କଚ୍ଛୁକ୍ଷଣ ଏଣେ ତେଣେ ଗୁହିଁ କହିଲା, "ଏଇତ, ସ୍କେଲଟନ ଦ୍ୱୀପ ଦେଖା ଯାଉଛି । ସ୍କେଲଟନ ଦ୍ୱୀପର ଡାହାଣ ପାଖରେ ତିନୋଟି ଲମ୍ବା ଲମ୍ବା ଗଛ । ହେଇଟି ପାହାଡ଼ର ଦୁଇଟି ଚୂଡ଼ା ଆକାଶକୁ ମୁଣ୍ଡ ଟେକିଛନ୍ତି । ତା ତଳେ ଆଉ ଗୋଟିଏ ଚୂଡ଼ା । ଏଇ ବୋଧହୁଏ ସ୍ପାଇଗ୍ଲାସର ଶୀର୍ଷ ହେବ ।

ମରଗାନ କହିଲା —ମୋର ଖାଲି ଫ୍ଲିଣ୍ଟ କଥା ମନେ ପଡ଼ୁଛି । ଛାତି ଭିତର ଭୟରେ କମ୍ପୁଛି—ମନଟା ଛନ ଛନ ଲାଗୁଛି ।

ସିଲ୍‌ଭର କହିଲା—"ଆରେ ଆମର କପାଳ ଭଲ, ଫ୍ଲିଣ୍ଟ ଆଉ ଏ ସଂସାରରେ ନାହିଁ ।" ଆଉଜଣେ ଦସ୍ୟୁ କହିଲା—"ଆରେ ବାପରେ ଫ୍ଲିଣ୍ଟର ଯେଉଁ ଚେହେରା, ସାକ୍ଷାତ ଯମଦୂତ ପରି ଭୟଙ୍କର । ଯେମିତି କଦାକାର ରୂପ, ସେମିତି ପିଶାଚ ସ୍ୱଭାବ ।"

ସମସ୍ତଙ୍କର ମନ ଫ୍ଲିଣ୍ଟ ଚିନ୍ତାରେ ମଗ୍ନ । ଏହାପରି ସମୟରେ ବୃକ୍ଷ ଅନ୍ତରାଳରୁ କିଏ ଯେପରି ସରୁ କେଁ କେଁ ସ୍ୱରରେ ଗାଇ ଉଠିଲା ।

"ସିନ୍ଦୁକ ଏହା ମୃତ ମାନବର
ଇୟୋ ହୋ—ହୋ
ଦୃଷ୍ଟି ତା ଉପରେ ପଞ୍ଚଦଶର
ହୋ ହୋ—ହୋ

ଗୀତ ଶୁଣାଯିବା ସଙ୍ଗେ ସଙ୍ଗେ ସମସ୍ତେ ଦାନ୍ତରେ ଦାନ୍ତ ଗୁପି ଭୟଙ୍କର କମ୍ପିବାକୁ ଲାଗିଲେ । ଦସ୍ୟୁମାନେ ଏତେ ଭୀତ ହୋଇଗଲେ ଯେ, ସେମାନଙ୍କ ମୁହଁ ବିବର୍ଣ୍ଣ ଦେଖାଗଲା । କେହି କେହି ଡେଇଁ ପଡ଼ିଲେ କିଏ ବା ଭୟରେ କାହାକୁ କୁଣ୍ଢାଇ ପକାଇଲା । ମରଗାନ ଭୂଇଁରେ ପଡ଼ି ଗିଁ ଗିଁ ହେବାକୁ ଲାଗିଲା ।

ଜର୍ଜ ମେରି ଚିତ୍କାର କରି ଉଠିଲା । ଭୟରେ ତା' ପାଟିରୁ କଥା ବାହାରୁ ନ ଥାଏ କେବଳ ଶୁଣାଗଲା, ଏ ଆଉ କେହି ନୁହେଁ, ଫ୍ଲିଣ୍ଟ । ଫ୍ଲିଣ୍ଟ ର କଣ୍ଠସ୍ୱର ମୋତେ ଭଲରୂପେ ଜଣା ।



( ଦୁହେଁ ପୁଣି ଭାବିବାକୁ ଲାଗିଲେ )

କିଛି ସମୟ ପରେ ଶୁଣାଯାଉଥିବା ଗୀତ ସ୍ୱରରୁ ଯେପରି ମନେ ହେଲା, ଗାୟକର ତଣ୍ଟି କେହି ସତେ ଚିପିଧରୁଛି । ଗୀତସ୍ୱର ସଙ୍ଗେ ସଙ୍ଗେ ବନ୍ଦ ହୋଇଗଲା ।

ସିଲ୍‌ଭରର ଓଠ ଭୟରେ ଶେତା ପଡ଼ିଗଲାଣି, ତଥାପି ସେ ଶାନ୍ତ କଣ୍ଠରେ କହିଲା, ଏଠାରେ ପଡ଼ି ରହିଲେ ତ ଚଳିବନାହିଁ, ଆଗକୁ ଯିବାକୁ ହେବ । ଏ ତ ମଣିଷର କଣ୍ଠସ୍ୱର ଶୁଭିଲା ।

କଥା କହୁ କହୁ ସିଲଭରର ଟିକିଏ ସାହସ ଆସିଲା । ମୁହଁର ଭାବଭଙ୍ଗୀ ବଦଳିଗଲା । ସଙ୍ଗେ ସଙ୍ଗେ ସମସ୍ତଙ୍କର ଭୟ ମଧ୍ୟ ଦୂରହେବାକୁ ଲାଗିଲା ।

ଏହି ସମୟରେ ପୁଣି ସେହି କଣ୍ଠସ୍ୱର । ଏଥର କିନ୍ତୁ ଗୀତ ନୁହେଁ ଖାଲି ଶୁଣାଗଲା 'ଡାରବି ଏମଗ୍ରୋ ! ଡାରବି ମଦ, ମଦ । 'ସ୍ୱର କ୍ରମଶଃ ସ୍ପଷ୍ଟତର ହେଲା । ସ୍ପାଇଗ୍ଲାସ ପାହାଡ଼ରୁ ପ୍ରତିଧ୍ୱନି ଶୁଣାଗଲା, 'ଡାରବି ଏମଗ୍ରୋ. ମଦ ମଦ ! ଏହି ଧ୍ୱନି କ୍ଷୀଣରୁ କ୍ଷୀଣତର ହୋଇ ପୁଣି ମିଳାଇ-ଗଲା । ଦସ୍ୟୁମାନେ ଶବ ପିଲୁଲା ପରି ଠିଆହୋଇ ରହିଲେ । ଜଣେ ରହି ରହି କହିଲା—ହେଇଟି ରହିଗଲା, ଗ୍ଲ ପଳାଇବା ।

ମରଗାନ କହିଲା—ଏଇ କଥା କହି ଫ୍ଲିଣ୍ଟ ମରିଥିଲା । ଏଇଟା ତାର ଶେଷ କଥା । ଡିକ ତାର ବାଇବେଲ ବାହାର କରି ପ୍ରାର୍ଥନା କରିବାକୁ ଲାଗିଲା । ଡିକ ଏଇ ଦସ୍ୟୁମାନଙ୍କ ଦଳରେ ମିଶିବା ପୂର୍ବରୁ ଭଲ ଘରେ ବଢ଼ିଥିଲା । ଏହିପରି ବହୁ ସମୟ ବିତିଗଲା । ତା ପରେ ସିଲ୍‌ଭର ସାହସରେ ଦାନ୍ତ କଡ଼ମଡ଼ କରି କହିଲା-ଏ ଦ୍ୱୀପରେ ଡାରବିନ୍‌କୁ ଚିହ୍ନିଛି ଏପରି ଆଉ କିଏ ଅଛି ? ଆମ୍ଭେ କେତେଜଣ ଡାରବିନ୍‌କୁ ଚିହ୍ନିଛୁ । ଆମ ବ୍ୟତୀତ ଆଉ ତାକୁ କିଏ ଜାଣେ ? ସାଥୀମାନେ ଆଗେଇ ଆସ, ମୁଁ କହୁଛି ମୋର ଅନୁସରଣ କର ! କାହାର ସାଧ ନାହିଁ ମତେ ମାରିବ । ସେ ମଣିଷ ହେଉ ବା ଭୂତ ହେଉ । ଫ୍ଲିଣ୍ଟ ବଞ୍ଚିଥିବେଳେ ମୁଁ ତାକୁ ଭୟ କରୁନଥିଲି । ସେ ବର୍ତ୍ତମାନ ମରି ଭୂତ ହୋଇଛି । ସେହି ଭୂତ ଆଗକୁ ମୁଁ ଅବଶ୍ୟ ଯିବି, ଭୟରେ ପଛଘୁଞ୍ଚା ଦେବି ନାହିଁ । ଅଳ୍ପ ଦୂରରେ ଏକ ଶହ ଲକ୍ଷ ଟଙ୍କାର ସମ୍ପତ୍ତି ଅଛି । ଉହୁଁର ଏତେ ନିକଟବର୍ତ୍ତୀ ହୋଇ ଏଭଳି ନିର୍ବୋଧ ଭଳି କିଏ ଭୟରେ ପଳାୟନ କରେ ? ଫ୍ଲିଣ୍ଟ

ମରନ୍ତି । ସେ ମରି ଭୂତ ହୋଇଛି । ଭୂତକୁ ଆମର ଭୟ କଣ ? କିନ୍ତୁ ଗୋଟାଏ କଥା କିଛି ବୁଝିପାରୁନାହିଁ । ଭୂତ ହୁଏତ ଅଛି, କିନ୍ତୁ ଭୂତ କଥା କୁହେନାହିଁ । ପୁଣି ସେହି କଥାର ପ୍ରତିଧ୍ୱନି ଶୁଣାଯିବ ! ଏ ମଧ୍ୟ କିଭଳି ଆଶ୍ଚର୍ଯ୍ୟ କଥା !

ମେଘ କହିଲା ଠିକ୍ କଥା; ସିଲ୍‌ଭର ଠିକ୍ କହୁଛି; ଏତେ ଭୟରେ ମଧ୍ୟ ତୁମ ବୁଦ୍ଧି ଲୋପ ହୋଇନାହିଁ । ବଡ଼ ମାହସର କଥା । ଆମ ସମସ୍ତଙ୍କର ମୁଣ୍ଡ ଘୂରୁଛି, କେବଳ ତୁମର ମୁଣ୍ଡ ଠିକ ଅଛି । ମୋର ମନେ ହେଉଛି ଏ ସ୍ୱର ଫ୍ଲିଣ୍ଟର ନୁହେଁ—ଏ ଯେପରି ଆଉ କାହାର— ଏ ଯେପରି—

ସଙ୍ଗେ ସଙ୍ଗେ ସିଲ୍‌ଭର ଗର୍ଜିଉଠିଲା—ଏ ନିଶ୍ଚୟ ବେନ୍‌ଗନ ” । “ଠିକ୍ ଠିକ୍ ଏ ନିଶ୍ଚୟ ବେନ୍‌ଗନ ” । ମରଗାନ୍ ବଡ ପାଟିରେ କହି-ଉଠିଲା ।

ଏହା ଶୁଣି ମେଘ କହିଲା, ‘ବେନଗନ୍‌କୁ ଆମର ଭୟ କଣ ? ସେ ମରୁ ବା ବଞ୍ଚିଥାଉ । ତାକୁ ପୁଣି କିଏ ଡରିଲାଣି ନା ଡରିବ ?’

ଆଶ୍ଚର୍ଯ୍ୟର କଥା ଦେଖ, ଦେଖୁ ସମସ୍ତଙ୍କର ସାହସ ଫେରିଆସିଲା । ସବୁରି ମୁହଁର ବର୍ଣ୍ଣ ସ୍ୱାଭାବିକ ଦେଖାଗଲା ! ସେମାନେ ପରସ୍ପର ମଧ୍ୟରେ କଥାବାର୍ତ୍ତା ହେବାକୁ ଲାଗିଲେ । ଆଉ କୌଣସି ଶବ୍ଦ ଶୁଣା ଗଲା ନାହିଁ । ସେମାନେ କୋଦାଳ ଆଦି ଧରି ଅଗ୍ରସରହେବାକୁ ଲାଗିଲେ; ମାତ୍ର ଡରର ଭୟ ଯାଉ ନ ଥାଏ । ମେଘ ସମସ୍ତଙ୍କ ଆଗେ ଚାଲିଲା । ପାହାଡ଼ ଉପର ଦେଇ ଯାଉ ଯାଉ ସ୍ପାଇଗ୍ଲାସର ଶୀର୍ଷଦେଶରେ ପହଞ୍ଚିଲୁ । ଲମ୍ବା ଗଛ-ଗୁଡ଼ିକ ମଧ୍ୟରୁ ପ୍ରଥମ ଗଛ ନିକଟକୁ ଯାଇ ଦେଖିଲୁ ଯେ ତାହା ମାନଚିତ୍ର-ଚିହ୍ନିତ ଗଛ ନୁହେଁ । ଦ୍ୱିତୀୟ ଗଛଟି ମଧ୍ୟ ନୁହେଁ । ତୃତୀୟ ଗଛଟି ଖୁବ୍ ଲମ୍ବା । ପ୍ରାୟ ୨୦୦ ଫୁଟ ଉଚ୍ଚ ହେବ । ତାପାଖରେ ଘଞ୍ଚବନ,ଘନଝାଡ଼ି । ପୂର୍ବ ଓ ପଶ୍ଚିମ ଦିଗକୁ ବହୁଦୂରରୁ ଏହି ଗଛ ଉପରେ ସମୁଦ୍ରଗାମୀ ନାବିକର ଦୃଷ୍ଟି ପଡ଼େ । ଫ୍ଲିଣ୍ଟଚିହ୍ନିତ ଗଛଟି ବୋଧହୁଏ ମିଳିଗଲା । ଏହି ଗଛର ବହଳ ଛାଇର କୌଣସି ସ୍ଥାନରେ ଅଜସ୍ର ରତ୍ନ ଲୁକ୍‌କାୟିତ । ସେହି ଅଜସ୍ର ରତ୍ନର ନିକଟକୁ ଆସି ଦସ୍ୟୁମାନଙ୍କର ସାହସ ୧୦ ଗୁଣ ବଢ଼ିଗଲା । ଡ଼ର ଭୟ କେଉଁଆଡ଼େ ଉଭେଇଗଲା । ଆଖିଗୁଡ଼ାକ ଦାଉ ଦାଉ ଜଳିବାକୁ ଲାଗିଲା । ପାଦର ଗତି ଚଞ୍ଚଳ ହେବାକୁ ଲାଗିଲା । ସିଲ୍-

ହର ଆପଣା ଲାଠିରେ ଭର ଦେଇ ପଦଚ୍ଚାରଣ କରିବାକୁ ଲାଗିଲା । ନାକପୁଡ଼ା ଦୁଇଟି ଫୁଲି ଫୁଲି କମ୍ପି ଉଠିଥାଏ । ସେ ନାକ ଓ ମୁହଁରୁ ଘୁ ଷୁରୀ ପରି ଢେଁ। ଢେଁ। ଶବ୍ଦ କରୁଥାଏ । ମଧ୍ୟେ ମଧ୍ୟେ ଅଣ୍ଟାର ଦଉଡ଼ି ଧରି ଟାଣି ଦେଉଥାଏ ଯେ ମୋ ପ୍ରାଣ ବାହାରିଗଲା ପରି ମନେ ହେଉ-ଥାଏ । ଦଉଡ଼ିଟା ଟାଣି ଧରି ସେ ମୋ ଆଡ଼କୁ ମିଟିମିଟି କରି ଚାହିଁଲା । ସିଲ୍‌ଭର ଆଜି ଆପଣା ମନୋଭାବ ଲୁଚାଇ ରଖିବାକୁ ଚେଷ୍ଟା କଲା ନାହିଁ । ତାର ମନୋଭାବ ମୁଁ ତା ମୁହଁରୁ ଛପା ଅକ୍ଷରପରି ପରିଷ୍କାର ପଢ଼ିନେଲି । ରତ୍ନକୁ ପ୍ରାୟ ହାତ ମୁଠାରେ ପାଇ ସେ ଡାକ୍ତର ଲିଭେସିଙ୍କ କଥାନୁସାରେ କାର୍ଯ୍ୟ କରିବନାହିଁ । ସେ ନିଜର ପ୍ରତିଜ୍ଞା ଭଙ୍ଗ କରିବ, ହିଁ କରିବ । ସେ ଭାବୁଛି ସମସ୍ତ ରତ୍ନ ଲୁଟ କରିବ । ଦ୍ୱୀପରେ ଯେଉଁମାନେ ଅଛନ୍ତି, ସମ-ସ୍ତଙ୍କୁ ହତ୍ୟା କରିବ । ହିସ୍‌ପାନିଓଲାକୁ ଖୋଜି ବାହାର କରି ସେଥିରେ ଚଢ଼ି ଏକା ସମୁଦ୍ର ପାରିହେବ । ଦ୍ୱୀପକୁ ଆସିବା ପୂର୍ବରୁ ଏଇ ମତଲବ ତାର ମୁଣ୍ଡରେ ଖେଳୁଥିଲା ।

ମୁଁ ସିଲଭରକୁ ଦେଖି ଭୟରେ ଥର ଥର ହୋଇ କମ୍ପୁଥାଏ । ତହିଁରେ ପୁଣି ଫ୍ଲିଣ୍ଟର କଥା ଓ ତାର ସେହି ହତ୍ୟାର କଥା ମନେପଡ଼ୁ-ଥାଏ । ଏହି ଦ୍ୱୀପରେ ସେ ଛଅଜଣ ଦସ୍ୟୁଙ୍କୁ ହତ୍ୟା କରିଥିଲା । ସେଇ ଫ୍ଲିଣ୍ଟ ଯେ ସାଭାନାରେ ମଦ ପାଇଁ ଚିତ୍କାର କରି ପ୍ରାଣ ହରାଇଲା । କପରି ଭାବରେ ଏଇ ନିସ୍ତବ୍ଧ ବନ ପାହାଡ଼ ଆର୍ତ୍ତନାଦରେ ପରିପୂର୍ଣ୍ଣ ହୋଇ ଉଠିଲା । ଠିକ୍ ସେହି ପ୍ରକାର ହତ୍ୟା, ବୋଧହୁଏ ଥରେ ପାଇଁ ଏହି ଦ୍ୱୀପରେ ଘଟିବାକୁ ଯାଉଛି । କି ଭୟଙ୍କର କଥା । ମୋର ଦେହ ଓ ମନରେ କଣ୍ଟା ଫୋଡ଼ି ହୋଇଗଲା ପରି ଲାଗିଲା ।

ଆମ୍ଭେମାନେ ବଣର ଶେଷ ସୀମାରେ ଆସି ପହଞ୍ଚି ଗଲୁଣି । ଜର୍ଜମେରୀ ଚିତ୍କାର କରି ଉଠିଲା—ଶୀଘ୍ର ଧାଇଁ ଆସ, ଧାଇଁ ଆସ!

ସମସ୍ତେ ଧାଇଁବାକୁ ଲାଗିଲେ । ସିଲ୍‌ଭର ମଧ୍ୟ ତାର ଖୋଟା ଗୋଡ଼କୁ ବାଡ଼ିରେ ଭର ଦେଇ ଦୁଇ ଗୁଣ ଜୋରରେ ଚାଲିବାକୁ ଲାଗିଲା । ମୁହୂର୍ତ୍ତକ ମଧ୍ୟରେ ମତେ ନେଇ ସେମାନଙ୍କ ପାଖରେ ପହଞ୍ଚିଲା ।

କଥା କଣ ! ଏ କ କାଣ୍ଡ ଘଟିଛି ? ପ୍ରାୟ ୧୦ ଗଜ ଦୂର ଗୋଟିଏ ପ୍ରକାଣ୍ଡ ଗର୍ତ୍ତ ଖୋଳା ହୋଇଛି । ଖୁବ୍ ବଡ଼ବଡ଼ା ଓ ଗଭୀର ଗାତ । ଧାର ସବୁ ଭାଙ୍ଗି ପଡ଼ିଛି । ଭଙ୍ଗା ମାଟି ଉପରେ ଘାସ ଉଠିଛି । ଗର୍ତ୍ତଟି ଅଳ୍ପଦିନ ତଳେ ଖୋଳା ହୋଇଛି ବୋଲି ଜଣାପଡ଼ୁ ନାହିଁ । ଗର୍ତ୍ତ ମଧ୍ୟରେ ଲୁହାର ଖଣ୍ଡ ଖଣ୍ଡ ହତିଆର, ପ୍ୟାକିଂ ବାକ୍ସର କାଠ କେଇଖଣ୍ଡ ଏଣେ ତେଣେ ପଡ଼ିଛି । ଏହି ସବୁ କାଠ ମଧ୍ୟରେ ଗୋଟିଏ କାଠରେ ଲୁହା ଖୋଳା-ହୋଇ ଲେଖା ହୋଇଛି ଓ୍ୟାଲରସ୍ । ଫ୍ଲିଣ୍ଟର ଜାହାଜରେ ନାମ ଥିଲା ଓ୍ୟାଲରସ୍ ।

ବୁଝିବାକୁ କଛି ବାକ ରହିଲାନାହିଁ । ରତ୍ନ ହରଣହେଲ ।

## କପଦ ଘନେଇ ଆସିଲା

ଦସ୍ୟୁମାନେ ନଜ ଭାଗ୍ୟକୁ ଧିକ୍କାର ଦେବାକୁ ଲାଗିଲେ । ଏତେ ଦୂର ଆସି ଶେଷରେ ଏଇଆ ଘଟିବାକୁ ଥିଲା । ତଥାପି ଆଶା ବୈତରଣୀ ନଦୀ । ଯଦ କଛି ମିଳିଯାଏ--ଏହା ଭାବି ଜଣ ଜଣ ହୋଇ ଗାତ ଭିତରକୁ ଡେଇଁ ପଡ଼ିଲେ । କେବଳ ସିଲ୍‌ଭର ଗର୍ତ୍ତର ମୁହଁ ପାଖରେ ନିଶ୍ଚଳ ହୋଇ ଠିଆ ହୋଇଥାଏ । ଦସ୍ୟୁମାନେ ଗର୍ତ୍ତ ଭିତରେ ପୁଣି ମାଟି ଖୋଳିବାକୁ ଲାଗିଲେ । କନ୍ତୁ ସବୁ ଶ୍ରମ ବୃଥା, କଛି ମିଳିଲା ନାହିଁ । କେବଳ ମର-ଗାନ୍ ଦୁଇଟା ଗିନି ପାଇଲା । ସେମାନେ ସମସ୍ତେ ସେ ଗିନିରେ ହାତମାର ସ୍ପର୍ଶ ସୁଖ ଅନୁଭବ କଲେ ।

ସିଲ୍‌ଭରକୁ ଗୁହାଁ ମେରୀ ଗର୍ଜିଉଠି କହିଲା, ଦୁଇଟା ଗିନି, ଏହି ତୁମର ଏକଶହ ଲକ୍ଷ୍ୟ ଟଙ୍କାର ସମ୍ପତ୍ତି ନା ? ଏହା କହି ଗିନି ଧରିଥିବା ହାତଟାକୁ ସିଲ୍‌ଭରର ମୁହଁ ପାଖରେ ଜୋରରେ ହଲାଇବାକୁ ଲାଗିଲା । ମେରୀର ରାଗ ଦେଖେ କଏ ? ସତେ ଅବା ସିଲ୍‌ଭରକୁ ଖୁନ୍ କର ମନର ଉତ୍ତମାନ ମେଣ୍ଟାଇବ । ସିଲ୍‌ଭର ନର୍ବିକାର ଭାବରେ କହିଲା—ଖୋଳ, ଆହୁର ଖୋଳ, ବୋଧହୁଏ କେତେଟା ବାଦାମ ପାଇପାରିବ ।

ମେରୀ ଦାନ୍ତ ନକୁଟି କ୍ରୋଧୋନ୍ମତ୍ତ ହୋଇ କହିଲା—କଣ କହିଲ—ବାଦାମ ପାଇବ ତୁମେମାନେ ? ଶୁଣୁଛଟି ସିଲ୍‌ଭରର କଥା । ପଞ୍ଚାଶ ନମ୍ବର

ସଇତାନ; ପ୍ରଥମରୁ ସେ ସବୁ ଜାଣେ, ତା ମୁହଁରୁ ଜଣାପଡ଼ୁଛି । ଯେଉଁଲୋକ ଧନରତ୍ନ ନେଇ ପଳାଇଛି, ତା ସାଙ୍ଗରେ ସ୍ୱାର ମଳା ଅଛି । ପ୍ରଥମରୁ ସେ ବୁଢ଼ ବୁଢ଼ ପାଣି ପିଉଥିଲା । ଏବେ ମଧ୍ୟ ଦୁହିଁଙ୍କ ଭିତରେ ମସୁଧା ଚାଲିଛି । ଦେଖୁନାହିଁ ?

"ମେଗ୍, ଦେଖୁଛି ତୁମର ଭାରି ବୁଦ୍ଧି । ଏମିତି ଚତୁର ଶିକ୍‌କଣ କଥା କହି ସମସ୍ତଙ୍କ ନିଜ ଦଳକୁ ଟାଣି ନେଇ ନିଜେ କାପ୍ତାନ ହେବାର ଇଚ୍ଛା ନା ! ମତେ ତଥାପି କେହି କାପ୍ତାନ୍ ବୋଲି ମାନିବେ ନାହିଁ । ଆଚ୍ଛା ବେଶ୍ ।' ସିଲ୍‌ଭର ଶାନ୍ତ ସ୍ୱରରେ କହିଲା ।

ଦସ୍ୟୁମାନେ ସମସ୍ତେ ସିଲ୍‌ଭରର ମଷ ଛାଡ଼ି ମେଗ୍ ସାଥିରେ ଏକଜୁଟ ହେଲେ । ରତ୍ନ ଖୋଜି ଖୋଜି ହତାଶ ହୋଇ ସେମାନେ ଗର୍ତ୍ତ ଉପରକୁ ଆସିଲେ । ସିଲ୍‌ଭର ମୋତେ ଧରି ଯେଉଁଠି ଠିଆ-ହୋଇଥିଲା ତାର ବିପରୀତ ପାର୍ଶ୍ୱରେ ଠିଆହେଲେ । ଆମ ଦୁଇ ଦଳ ମଧ୍ୟରେ ସେହି ବିରାଟ ଗର୍ତ୍ତର ବ୍ୟବଧାନ । ସିଲ୍‌ଭର ନିଜର ଲଠିରେ ଭରାଦେଇ ସ୍ଥିର ଅବିଚଳିତ ଭାବରେ ଦଣ୍ଡାୟମାନ । ସେ ଯଥାର୍ଥରେ ନିର୍ଭୀକ ଓ ସାହସୀ ।

ମେଗ୍ କହିଲା—ବନ୍ଧୁଗଣ, ଅପର ପକ୍ଷରେ ସେମାନେ ଦୁଇଜଣ; ଜଣେ ବୁଢ଼ା, ଆଉ ଜଣେ ବାଳକ । ବର୍ତ୍ତମାନ ବନ୍ଧୁ ଗଣ—

ସେ ହାତ ଉଠାଇ ଆଦେଶ ଦେଲା 'ଚଳାଅ ଗୁଳି'

ତା ତୁଣ୍ଡର କଥା ନ ସରୁଣୁ ବନ ମଧ୍ୟରୁ ଢକ୍, ଢକ୍, ତିନୋଟି ବନ୍ଧୁକର ଆବାଜ ଆସିଲା । ମେଗ୍ ଓ ଅନ୍ୟ ଜଣେ ଦସ୍ୟୁ ଗୁଳି ଆଘାତରେ ପ୍ରାଣ ହରାଇ ଗର୍ତ୍ତ ମଧ୍ୟରେ ଟଳିପଡ଼ିଲେ । ବାକି ତିନି ଜଣ ପ୍ରାଣଭୟରେ ପଳାୟନ କଲେ ।

ମୁହୂର୍ତ୍ତକ ମଧ୍ୟରେ ଡାକ୍ତର, ବେନଗନ ଓ ଗ୍ରେ ଜଙ୍ଗଲ ମଧ୍ୟରୁ ବନ୍ଧୁକ ସହ ବାହାରି ଆସି ଆମ ସଙ୍ଗେ ଯୋଗଦେଲେ । ସେମାନଙ୍କର ବନ୍ଧୁକରୁ ଧୂଆଁ ବାହାରୁଥାଏ ।

ଡାକ୍ତର ଚିତ୍କାରକରି ଉଠିଲେ ଅଗ୍ରସର ହୁଏ, ଶୀଘ୍ର ବନ୍ଧୁକ ଫୁଟାଅ । ଜାହାଜ ପାଖରୁ ସେମାନଙ୍କୁ ନିଶ୍ଚୟ ତଡ଼ିଦେବା ।

ଆମେମାନେ ଚଞ୍ଚଳ ପଦକ୍ଷେପରେ ଜଙ୍ଗଲ ଭିତରେ ଗତି-କରିବାକୁ ଲାଗିଲୁ । ସିଲ୍‌ଭର ଆମ ସାଥିରେ ଧାଉଁଥାଏ । ଧାଇଁ ନ ପାରି ଡାକ ପକାଇଲା । ଆମେ ଦେଖିଲୁ ଯେ ଦସ୍ୟୁ ତିନିଜଣ ମିଜେନ ମାଷ୍ଟ ପାହାଡ଼ ଆଡ଼କୁ ଧାଉଁଛନ୍ତି । ସେମାନେ ଆମ ହାତ ମୁଠାରେ । ତେଣୁ ଆମେ ସବୁ ଜଣ ସେଠାରେ ଦମ ନେବାକୁ ବସିପଡ଼ିଲୁ । ଶ୍ଳେଟା ସିଲ୍‌ଭର ପଛେପଛେ ଆସି ଆମ ସଙ୍ଗେ ମିଶିଲା । ସେ କହିଲା—ଡାକ୍ତର, ଆପଣଙ୍କୁ ଅଶେଷ ଧନ୍ୟବାଦ । ଆପଣ ଠିକ୍ ସମୟରେ ପହଞ୍ଚିଗଲେ । ବାସ୍ତବିକ ମୋର ଭାଗ୍ୟ ଓ ଜିମ୍‌ର ଭାଗ୍ୟ ଖୁବ୍ ଭଲ । ଓହୋ—ବେନଗନ୍ ତୁମେ; ତୁମେ ବାସ୍ତବିକ ଭାରି ଭଲ । ମୋର ଭାଗ୍ୟ ତୁମକୁ ଭେଟିଲି ।

ଆନନ୍ଦିତ ହୋଇ ବେନଗନ୍ କହିଲା ହଁ; ହଁ ମୁଁ ବେନଗନ୍ । ପୁଣି ଟିକିଏ ରହି ଆରମ୍ଭକଲା—କିପରି ଅଛନ୍ତି ମିଃ ସିଲ୍‌ଭର ? ଭଲ ତୁମେ ମତେ ଧନ୍ୟବାଦ ଦେଉଛ ?

ବେନ୍‌ଗନ୍, ସିଲ୍‌ଭର କହିଲା—ତୁମେ ମୋର ଉପକାର କଲ ବୋଲି ଭାବୁଛି ।

ଆମେମାନେ ବୋଟ ଆଡ଼କୁ ଅଗ୍ରସର ହେଲୁ । ଆମ୍ଭ ନିକଟରେ ଡାକ୍ତର ସଂକ୍ଷେପରେ ସବୁ ବର୍ଣ୍ଣନା କଲେ । କି ପ୍ରକାର ହିସ୍‌ପ୍ୟାନିଓଲା ପହଞ୍ଚିବାର ବହୁପୂର୍ବରୁ ବେନ୍‌ଗନ୍ ଏଠାରେ ପହଞ୍ଚିଥିଲା । ବେନ୍‌ଗନ୍ ନିର୍ଜନ ଦ୍ୱୀପରେ ଭ୍ରମଣ କରୁ କରୁ ଏହି ସ୍କେଲିଟନ ପାହାଡ଼ର ସନ୍ଧାନ ପାଇଥିଲା । ତା'ପରେ ଗର୍ତ୍ତରେ ଖୋଳି ଫ୍ଲିଣ୍ଟର ରତ୍ନ ଉଦ୍ଧାରକରିଛି । ତା'ପରେ ବହୁ କଷ୍ଟରେ ବହୁ ଦିନ ଧରି ଏହି ଲମ୍ବା ପାଇନ ବଣ ତଳୁ ରତ୍ନରାଶି ବୋହିନେଇ ଉତ୍ତର-ପୂର୍ବ କୋଣର ଗୋଟିଏ ପାହାଡ଼ଗୁହାରେ ଲୁଚାଇ ରଖିଥିଲା । ଏହା ସବୁ ହିସ୍‌ପ୍ୟାନିଓଲା ପହଞ୍ଚିବାର ୧ ମାସ ପୂର୍ବର ଘଟଣା ।

ଡାକ୍ତର ତାହାଠାରୁ ଏହି ଗୁପ୍ତ ତଥ୍ୟ ଆକ୍ରମଣ ହେଲା ଦିନ ଅପରାହ୍ଣରେ ପାଇଥିଲେ । ତେଣୁ ପରଦିନ ଜାହାଜ ନ ଦେଖି ସିଲ୍‌ଭର

ନିକଟକୁ ଯାଇ ଗୁଳିଟି ଦେଇଦେଲେ । କାରଣ ଗୁଳିଟି ଅଦରକାରୀ ହୋଇ ଯାଇଥିଲା । ବେନ୍‌ଗନ୍ ତାର ଗୁହାରେ ପ୍ରଚୁର ଲୁଣଦିଆ ଛେଳି ମାଂସ ରଖିଥିଲା । ତେଣୁ ଡାକ୍ତର ତାଙ୍କ ଦଳ ସହ ଦୁର୍ଗ ଛାଡ଼ି ଚାଲି-ଯାଇଥିଲେ । ତା'ପରେ ସେ ମୋତେ କହିଲେ—ଜିମ୍, କେବଳ ତୁମପାଇଁ ମୁଁ ବିବେକବିରୁଦ୍ଧ କାମ କଲି; କିନ୍ତୁ ଯେଉଁମାନେ ତାଙ୍କ କର୍ତ୍ତବ୍ୟ କରିଛନ୍ତି, ସେମାନଙ୍କ ପାଇଁ ମୁଁ ଯାହା ଭଲ ମନେକଲି କରିଛି ।

ସିଲ୍‌ଭର କହିଲା—ଭାଗ୍ୟ ମୁଁ ଜିମ୍‌କୁ ବଞ୍ଚାଇ ରଖିଥିଲି । ତେଣୁ ଆଜି ପ୍ରାଣ ପାଇଲି । ନଚେତ୍ ଆପଣ ତଳେ ହେଲେ ଦ୍ୱିଧା ନ କରି ବୁଢ଼ା ସିଲ୍‌ଭରକୁ ଟିକିଟିକି କରି କାଟି ଜକାଇଥାନ୍ତେ ।

ଆଠ ମାଇଲ ବାଟ ଚାଲିଚାଲି ଆସିଲୁ । ସିଲ୍‌ଭର ମଲା ମଣିଷ ପରି ହାଲିଆ ହୋଇ ପଡ଼ୁଥାଏ । ଗୁରିଦିନ ତଳେ ଯେଉଁଠି ଜାହାଜ ଲଙ୍ଗର ପକାଇଥିଲା, ସେହି ବାଟ ଦେଇ ଆସିଲୁ ।

ଶେଷରେ ବେନ୍‌ଗନ୍‌ର ଅନ୍ଧକାର ଗୁହା ଦୃଷ୍ଟିଗୋଚର ହେଲା । ସେଠାରେ କିଏ ଜଣେ ବନ୍ଧୁକଧରି ଠିଆ ହୋଇଥିବାର ଦେଖାଗଲା । ନିକଟକୁ ଯାଇ ଦେଖୁ ତ ସେ ଆମର ପରିଚିତ ସ୍କୋୟାର । ରତ୍ନରାଶିକୁ ପହରା ଦେଉଛନ୍ତି । ଆମେ ସମସ୍ତେ ରୁମାଲ ହଲାଇ ଆନନ୍ଦରେ ଜୟଧ୍ୱନି କଲୁ । ସିଲ୍‌ଭର ମଧ୍ୟ ଆମର ଆନନ୍ଦରେ ରୁମାଲ ଉଡ଼ାଇ ଯୋଗଦେଲା ।

ତିନି ମାଇଲ ଦୂରରେ ଆମେ ଜାହାଜକୁ ଭେଟିଲୁ । ବେନଗନ୍‌ର ରତ୍ନାଗାରର ନିକଟବର୍ତ୍ତୀ ରମ୍‌କୋଭରେ ଜାହାଜ ଲଙ୍ଗର ପକାଇଲା । ଗ୍ରେ ସେଠାରେ ସାରା ରାତି ଜାହାଜକୁ ଜଗି ରହିଲା ।

ସ୍କୋୟାର ମତେ ଦେଖି ଆଦର କଲେ, ମୋର ପଳାୟନ ସମ୍ବନ୍ଧରେ ଭଲ ମନ୍ଦ କିଛି କହିଲେନାହିଁ । ସିଲଭର ସସମ୍ମାନେ ସାଲ୍ୟୁଟ କରିବାର ଦେଖି ସ୍କୋୟାର କହିଲେ ଜନ ସିଲ୍‌ଭର, ତୁମେ ଜଣେ ଭଣ୍ଡ, ଭୟଙ୍କର ଲୋକ । ମୁଁ ତୁମକୁ ଜେଲ ଦେଇଥାନ୍ତି, ଫାଶିକାଠରେ ଝୁଲାଇ ଥାଆନ୍ତି; କିନ୍ତୁ ଡାକ୍ତରଙ୍କର ଅନୁରୋଧରେ କିଛି କଲିନାହିଁ ।

ସିଲ୍‌ଭର ହାତଯୋଡ଼ି କହିଲା—ଅଶେଷ ଧନ୍ୟବାଦ ଆଜ୍ଞା, ଆପଣଙ୍କର ଅସୀମ ଦୟା ।

ତାପରେ ଆମେ ସମସ୍ତେ ଗୁହା ଭିତରକୁ ଗଲୁ । ଖୁବ୍ ପ୍ରକାଣ୍ଡ ଗୁହା । ତା ମଧ୍ୟରେ ଗୋଟିଏ ସ୍ରୋତ ଝରଣା ବହିଯାଉଥାଏ । ନିର୍ମଳ ଜଳ । ଗୁହା ମଧ୍ୟରେ ଅଗ୍ନିକୁଣ୍ଡଟିଏ ଜଳୁଥାଏ । ତା ପାଖରେ କାପ୍ତାନ୍ ସ୍ମୋଲେଟ ଶୋଇଥାନ୍ତି । କୁଣ୍ଡର ଅଗ୍ନି ଶିଖାରେ ଦେଖିଲି ଯେ ଅନେକ ଦୂରରେ ଗୋଟାଏ କୋଣରେ ରାଶି ରାଶି ମୁଦ୍ରା କୁଢ଼ାହୋଇ ରହିଛି । ସୁନା ତିଆରି ବାଡ଼ରେ ଅସଂଖ୍ୟ ଚତୁର୍ଭୁଜ ତିଆରି ହୋଇଛି । ଏହି ସବୁ ଫ୍ଲିଣ୍ଟର ରତ୍ନ । ଦୁଃଖ କଷ୍ଟ ସହି ଏତେ ପଥ ଆମେ ଏହାରି ପାଇଁ ଅତିକ୍ରମ କରି ଆସିଲୁ । ଏହାରି ପାଇଁ ହିସ୍‌ପ୍ୟାନିଓ୍ୟାଲା ଜାହାଜର ୧୭ ଜଣ ନାବିକଙ୍କର ପ୍ରାଣହାନି ଘଟିଲା । ଏତେ ଧନ ରତ୍ନ ଏକାଠି କରିବା-ପାଇଁ ଫ୍ଲିଣ୍ଟ ଏତେ ଲୋକଙ୍କର ପ୍ରାଣ ନେଇଛି । କେତେ ରକ୍ତପାତ, ଗୋଳାବର୍ଷଣ, ଜାହାଜ ମଗ୍ନ, କେତେ ମିଥ୍ୟା, ନିଷ୍ଠୁରତାର କାର୍ଯ୍ୟ କରିଛି ତାର ଅନ୍ତ ନାହିଁ । ଏବେ ମଧ୍ୟ ଏହି ଦ୍ୱୀପରେ ଫ୍ଲିଣ୍ଟର ତିନୋଟି ବନ୍ଧୁ ବଞ୍ଚିଛନ୍ତି । ଜଣେ ସିଲ୍‌ଭର, ଜଣେ ମରଗାନ ଓ ଅନ୍ୟ ଜଣେ ବେନଗନ୍ । ଏମାନେ ଫ୍ଲିଣ୍ଟ ସହ ପାପ କାର୍ଯ୍ୟରେ ଲିପ୍ତଥିଲେ । ଆଶାଥିଲା ଭବିଷ୍ୟତରେ ଫ୍ଲିଣ୍ଟଠାରୁ ପୁରସ୍କାର ପାଇବେ ।

କାପ୍ତାନ୍ କହିଲେ—ଆସ, ଆସ ଜିମ୍, ତୁମେ ଘରି ଭଲପିଲା । ମୁଁ ଭାବୁଛି ଆଉ ଯେପରି ଆମେ ଦୁହେଁ ଜୀବନରେ ସମୁଦ୍ରଯାତ୍ରା ନ କରୁ ଏଇ ଆମର ଶେଷ ସମୁଦ୍ର ଯାତ୍ରା ହେଉ । ତୁମେ ବାସ୍ତବିକ ମୋର ଅତି ପ୍ରିୟପାତ୍ର । ଆରେ ଏ କିଏ ? ସିଲ୍‌ଭର ଯେ ! ତୁମେ ଏଠାରେ କିପରି ?

ସିଲ୍‌ଭର କହିଲା—ଆଜ୍ଞା, ମୋର କର୍ତ୍ତବ୍ୟ କାମରେ ମୁଁ ପୁଣି ଫେରି ଆସିଛି ।

ଓହୋ—କହି କାପ୍ତାନ ନୀରବ ରହିଲେ ।

ସେଦିନ ରାତିରେ ବନ୍ଧୁମାନଙ୍କ ସଙ୍ଗରେ ବସି ଯେଉଁ ଖାଇବାଟା ହେଲା କିଏ କହିବ ? ବେନଗନର ଲୁଣିଆ ମେଣ୍ଢାମାଂସ ଘରି ବଢ଼ିଆ ଲାଗିଲା । ସିଲ୍‌ଭର ମଧ୍ୟ ଆନନ୍ଦ ମନରେ ଆମ ସାଥିରେ ପୂର୍ବପରି ଖାଇବାରେ ଯୋଗଦେଲା ।

ପରଦିନ ଖୁବ୍ ଭୋରରୁ ଉଠି ରତ୍ନ ନେବାର ବ୍ୟବସ୍ଥା କରିବାକୁ ହେଲା । ବଡ଼ କଠିନ କାର୍ଯ୍ୟ । ସମୁଦ୍ରକୂଳର ପ୍ରାୟ ୧ ମାଇଲ ଦୂର । ସେଠାରୁ ଡଙ୍ଗାରେ ବସି ତିନିମାଇଲ ଜଳପଥରେ ହିସ୍ପାନିଓ୍ୟାଲାରେ ନେଇପାରିବା । ସ୍ଥଳରେ ଏକ ମାଇଲ, ଜଳରେ ତିନି ମାଇଲ ଏମିତି ୪ ମାଇଲ ପଥ । ଏତେଦୂର ପଥକୁ ମାତ୍ର ଆମେ କେତେଜଣ । ଏତେ ଧନରତ୍ନ, ସୁନା ଦଣ୍ଡ ବୋହିନେବା ସହଜସାଧ୍ୟ ନୁହେଁ । ଯାହା ହେଉ, ଆମ୍ଭେମାନେ କାମରେ ଲାଗିଗଲୁ । ଯେଉଁ ତିନିଜଣ ଦସ୍ୟୁ ଲୁଚିଯାଇଥିଲେ, ସେମାନେ କୌଣସି ବିଘ୍ନ ଘଟାଇ ପାରନ୍ତି ଏହି ଆଶଙ୍କାରେ ଆମ ଭିତରୁ ଜଣେ ପାହାଡ଼ ଉପରେ ପହରା ଦେବାକୁ ଲାଗିଲା । ଗ୍ରେ ଓ ବେନ୍‌ଗନ ନୌକାନେଇ ହିସ୍ପାନିଓ୍ୟାଲାକୁ ଯାତାୟାତ କରିବାକୁ ଲାଗିଲେ । ବାକି ସମସ୍ତେ ଧନରତ୍ନ ବୋହି ଆଣି ସମୁଦ୍ରକୂଳରେ ଠୁଳ କଲେ । ଏକା ଥରରେ ଦୁଇଟି ସ୍ୱର୍ଣ୍ଣଦଣ୍ଡ ବୋହି ନେବା ପ୍ରତ୍ୟେକଙ୍କ ପକ୍ଷରେ ଯଥେଷ୍ଟ ଭାରି ବୋଝ ! ମୁଁ କିଛି ବୋହି ପାରିବି ନାହିଁ ବୋଲି ମୋତେ ଗୁମ୍ଫାରେ ରହିବାକୁ ଆଦେଶ ଦିଆଗଲା । ମୁଁ ସେଠାରେ ରହି ଟଙ୍କା ପଇସା ଯାହାଥିଲା ସେଟି ବସ୍ତାରେ ପ୍ୟାକ କରିବାରେ ଲାଗି ପଡ଼ିଲି । ଗୋଟି ଗୋଟି ହୋଇ ସବୁ-ବସ୍ତା ଭର୍ତ୍ତି ହୋଇଗଲା । ନାନା ଦେଶର ନାନା ରକମର ମୁଦ୍ରା—ବିଲି ବୋନସର ସିନ୍ଦୁକ କଥା ମନେ ହେଲା । ଅବଶ୍ୟ ଭାରି ଖୁସି ଲାଗୁଥାଏ । ତଥାପି ନଇଁଡ଼େ ସେଗୁଡ଼ାକ ବାଛୁ ବାଛୁ ମୋର ଅଣ୍ଟାପିଠି ଲାଗିଗଲା । ଆଙ୍ଗୁଠିଗୁଡ଼ାକ ବ୍ୟଥାରେ କଟ୍ କଟ୍ ହେବାକୁ ଲାଗିଲା । ଏଭଳି ଦେଶ ନାହିଁ ଯେଉଁଦେଶର ମୁଦ୍ରା ସେ ମୁଦ୍ରାସ୍ତୂପ ମଧ୍ୟରେ ନ ଥିଲା । ଇଂଲଣ୍ଡ, ଫ୍ରାନ୍ସ, ପର୍ତ୍ତୁଗାଲ, ସମଗ୍ର ୟୁରୋପରେ ଗତ ଶହେ ବର୍ଷ ମଧ୍ୟରେ ଯେତେ ରାଜା ରାଜତ୍ୱ କରିଥିଲେ, ସବୁ ରାଜାଙ୍କର ଚେହେରା ଛାପମରା ମୁଦ୍ରାସବୁ ଠୁଳ ହୋଇଥିଲା; ଏପରିକି ଏସିଆ ମହାଦେଶର ବିବିଧ ପ୍ରକାରର ମୁଦ୍ରା ମଧ୍ୟ ଥିଲା । ତା ପରଦିନ ମୁଦ୍ରା ଗଣଣ ହେଲା । ସେ ଦସ୍ୟୁ ତିନିଙ୍କର ଆଉ କୌଣସି ପତ୍ତା ମିଳିଲା ନାହିଁ ।

ତୃତୀୟ ଦିନ ସନ୍ଧ୍ୟାରେ ଡାକ୍ତର ଓ ମୁଁ ପାହାଡ଼ ଉପରେ ବସିଥିଲୁ ଏ ଭଳି ସମୟରେ ଗୀତ ଓ ପାଟିତୁଣ୍ଡ ଦୂରରୁ ଶୁଣାଗଲା ।

ଡାକ୍ତର କହିଲେ  ଏମାନେ ଦସ୍ୟୁ, ଭଗବାନ ସେମାନଙ୍କ କ୍ଷମା କରନ୍ତୁ । ଆମ ପଛରୁ ସିଲ୍‌ଭର କହି ଉଠିଲ-ଆଜ୍ଞା, ସେମାନେ ସବୁ ମଦ ଖାଇ ମାତାଲ ହୋଇଛନ୍ତି ।

ସିଲ୍‌ଭର ପୂର୍ଣ୍ଣ ସ୍ୱାଧୀନତା ପାଇଥାଏ ସତ; କିନ୍ତୁ ସମସ୍ତେ ତାକୁ କୁକୁର ପରି ଘୃଣା କରୁଥାନ୍ତି । ଖାଲି ବେନ୍‌ଗନ ତାର ପୁରୁଣା ମାଷ୍ଟରଭାବ ଭୟ କରୁଥାଏ । କାରଣ ସେ ମୋର ଜୀବନ ବଞ୍ଚାଇଛନ୍ତି । ତାର ବିଶ୍ୱାସଘାତକତା କଥା ମନେ ଅଛଟା ନ ଥାଏ । ତା ପରି କୁଚକ୍ରୀ ପକ୍ଷରେ ଅସମ୍ଭବ କ'ଣ ? ସେ ଯାହାହେଉ, ସେ ତିନି ଜଣ ଦସ୍ୟୁଙ୍କ ବିଷୟରେ ଆମେ ଆଉ କିଛି ଶୁଣି ନାହୁଁ । ଥରେ ବନ୍ଧୁକ ଅବାଜ ଶୁଣାଯାଇଥିଲା । ବୋଧହୁଏ ସେମାନେ ଶିକାର ଅନ୍ୱେଷଣ କରୁଥିଲେ । ଶେଷରେ ଆମେ ସମସ୍ତେ ମିଳିମିଶି ସ୍ଥିରକଲୁ ସେମାନଙ୍କୁ ଏହି ଦ୍ୱୀପରେ ଛାଡ଼ିଦେଇ ଯିବା । ବେନ୍‌ଗନ୍ ପ୍ରମୁଖ ଏ ପ୍ରସ୍ତାବ ଆଣିଲେ । ଆମ୍ଭେମାନେ ସେମାନଙ୍କ ପାଇଁ ଅନେକ ବାରୁଦ ଓ ଗୁଳି, ପ୍ରଚୁର ସେଣ୍ଢା ମାଂସ, କିଛି ଔଷଧ, ଲୁଗାପଟା, କିଛି ଦଉଡ଼ି ଓ ଦୁଇ-ଗୁଛା ପାଲ, କେତେକ ଯନ୍ତ୍ରପାତି ଓ ଆଉ କିଛି ଦରକାରୀ ଜିନିଷପତ୍ର ରଖିଦେଲୁ । ଡାକ୍ତରଙ୍କର ଇଚ୍ଛାଅନୁସାରେ ଗୋଟିଏ ସୁନ୍ଦର ଧୂଆଁପତ୍ର ଡବା ମଧ୍ୟ ଛାଡ଼ିଗଲୁ । ଜାହାଜରେ ଯଥେଷ୍ଟ ପରିମାଣରେ ପାଣି, ବଳକା ମାଂସ ବଗେରା ସମସ୍ତଙ୍କ କାମରେ ଲଗିବ ଭାବି ସାଇତି ରଖିଲୁ । ଶେଷରେ ଏକ ନିର୍ମଳ ପ୍ରଭାତରେ ଯାତ୍ରା ଆରମ୍ଭହେଲା । ଆମ୍ଭେମାନେ ଦ୍ୱୀପରୁ ବିଦାୟ ନେଲୁ ।

ଜାହାଜ ଛାଡ଼ିଦେଲାବେଳକୁ ପୁଣି ଦ୍ୱୀପପାଖରେ ଘୂରିବାକୁ ପଡ଼ିଲା । ଦେଖିଲୁ ଯେ ତିନିଜଣ ସେହି ଦସ୍ୟୁ । ବାଲି ଉପରେ ଆଣ୍ଠୁମାଡ଼ି ବସି ଯୋଡ଼ ହାତରେ କାତର ଅନୁରୋଧ କରୁଥାନ୍ତି । କହୁଥାନ୍ତି—ଆମକୁ ନେଇଯାଅ, ଛାଡ଼ିଦେଇ ଯାଅନାହିଁ । ସେମାନଙ୍କର କରୁଣ ସ୍ୱର ସମସ୍ତଙ୍କ ମନରେ ଆଘାତ କଲା ସତ; କିନ୍ତୁ ସେମାନଙ୍କୁ ଜାହାଜରେ ନେଲେ ପୁଣି ହଣାକଟାର ଆଶଙ୍କା ଭୟରେ ଆମେ ଆଉ ସେମାନଙ୍କୁ ଜାହାଜରେ ଆଣିଲୁନାହିଁ ।

ଡାକ୍ତର କହିଲେ-ଆମେ ଯାଉଛୁ ସତ କିନ୍ତୁ ତୁମମାନଙ୍କୁ ଅସହାୟ ଅବସ୍ଥାରେ ଛାଡ଼ି ଯାଉନାହୁଁ । ତୁମପାଇଁ ଏ ପାହାଡ଼ ପାଖରେ ଖାଦ୍ୟ,

ପରିଧାନ, ଗୁଳି, ବାରୁଦ; ପାଲ ଇତ୍ୟାଦି ଆବଶ୍ୟକ ପଦାର୍ଥମାନ ରହିଲା । ଯନ୍ତ୍ର ଲୁହା ସବୁ ରହିଲା । ଗଛ କାଟ, ନୌକା ତିଆରି କର, ପାରନ୍ତ ହାଇ ଘରକୁ ଯାଅ ।

ଜାହାଜ ଭାସି ଭାସି ଚାଲିଲା । କ୍ରମେ ପାହାଡ଼, ଦ୍ୱୀପ ବନ କେଉଁଆଡ଼େ ଅଦୃଶ୍ୟ ହୋଇଗଲା । ଯେଉଁଆଡ଼େ ଚାହିଁବ ଖାଲି ଜଳ ଜଳରାଶି ।

ଆମେମାନେ ସଂଖ୍ୟାରେ ବହୁତ କମ୍ ଥିଲୁ । ତେଣୁ ସମସ୍ତଙ୍କୁ ଦୌଡ଼ ଖାଟିବାକୁ ପଡ଼ୁଥାଏ । ତେଣୁ ଶୀଘ୍ର କ୍ଲାନ୍ତ ହୋଇପଡ଼ିଲୁ । ସମସ୍ତେ ସ୍ଥିର କଲୁ ଯେ ଫ୍ରେଞ୍ଚ୍ ଆମେରିକା ବନ୍ଦରରେ ଜାହାଜ ଭିଡ଼ିବାକୁ ପଡ଼ିବ ।

ଠିକ୍ ସନ୍ଧ୍ୟାବେଳକୁ ଆମେ ଯେଠାରେ ପହଞ୍ଚି ଲଙ୍ଗର ପକାଇଲୁ । ଦଳ ଦଳ ହୋଇ ଫେରିବାଲା ନୌକାରେ ଚଢ଼ି ନାନା-ପ୍ରକାର ଫଳମୂଳ ପସରା ପାଇଁ ଜାହାଜକୁ ଆସୁଥାଆନ୍ତି । ନାନା ଦେଶର ଲୋକ, ମେସ୍ତ, ନିଗ୍ରୋ, ମେକ୍ସିକାନ୍ ଆଦି ନାନାପ୍ରକାର ଲୋକ । ଅନେକ ଦିନ ପରେ ନୂଆ ନୂଆ ଲୋକ ଦେଖିବାକୁ ଓ ସୁନ୍ଦର ପାଚିଲା ଫଳ ଖାଇବାକୁ ଭାରି ଭଲ ଲାଗିଲା ।

ଡାକ୍ତର ଓ ସ୍କୋୟାର ମତେ ସାଙ୍ଗରେ ଧରି କୂଳରେ ଓହ୍ଲାଇଲେ । କିଛିକ୍ଷଣ ସମୁଦ୍ରତୀରରେ ବୁଲିବା ପରେ ଜଣେ ଇଂରେଜ କାପ୍ତାନ୍‌ଙ୍କ ସଙ୍ଗରେ ଆଳାପ ପରିଚୟ ହେଲା । ସେ ଗୋଟିଏ ଯୁଦ୍ଧ ଜାହାଜର କାପ୍ତାନ୍ । ତାଙ୍କ ସଙ୍ଗେ ତାଙ୍କ ଜାହାଜକୁ ଯାଇ ବହୁତରାତି ପର୍ଯ୍ୟନ୍ତ ଗଳ୍ପ କଲୁ । ଯେତେବେଳେ ହିସ୍ପାନିଓଲାକୁ ଫେରିଆସୁ, ସେତେବେଳକୁ ପ୍ରାୟ ଭୋର ହେଲାଣି । ବେନ୍‌ଗନ୍ ଡେକ୍‌ରେ ଏକୁଟିଆ ଠିଆହୋଇଥାଏ । ଆମେ ପହଞ୍ଚିବାକ୍ଷଣି ସେ କହିଲା, ସିଲ୍‌ଭର ଗୋଟିଏ ନୌକା ଧରି ପଳାଇଛି । କିନ୍ତୁ ସେ ଖାଲି ହାତରେ ଯାଇ ନାହିଁ । ସେ ଗୋଟିଏ ଥଳିଧରି ପଳାଇଛି । କେତେବେଳେ ନେଲା ଜାଣିହେଲାନାହିଁ । ସେଥିରେ ପ୍ରାୟ ତିନିଶହ କି ଚାରିଶହ ଗିନି ଥିବ ।

ଆମେ ସମସ୍ତେ କହିଲୁ, ଭଲ ହେଲା । ତିନିଶହ ଚାରିଶହ ଗିନି ଯାଇଛି ତ ଠିକ୍ ଅଛି, ସିଲ୍‌ଭର ପଳାଇଛି ରକ୍ଷାହୋଇଛି । ସେଇ ଯଥେଷ୍ଟ । ବିପଦ ଯାଇଛି, ଆମେ ରକ୍ଷା ପାଇଲୁ । ସେ ଜାହାଜରେ ଥିଲେ କେତେବେଳେ କି ବିପଦ ଘଟାଇଥାନ୍ତା; କିଏ କହିବ ?

ଆମେ କେତେଜଣ ନୂଆ ନାବିକଙ୍କୁ ନେଇ ବର୍ଷ୍ଟିଲରେ ବ୍ରିଷ୍ଟଲ ବନ୍ଦରରେ ହେଉଥିଲୁ । ମିଃ ଟ୍ରାଲନି ଆମକୁ ଅପେକ୍ଷା କରିଥିଲେ । ଆମେ ୫ ଜଣ ଲୋକ ଫେରିଆସିଲୁ । ତଥାପି ଅନ୍ୟ ନାବିକମାନଙ୍କ ପରି ଆମର ଦଶା ସେତେ ଶୋଚନୀୟ ହୋଇନଥିଲା । ସମୁଦ୍ରରେ ନାବିକମାନେ ଗୀତ ଗାଆନ୍ତି ।

ପଞ୍ଚସ୍ତରି ଜଣ ଦରିଆକୁ ଗଲେ,
ଜଣକୁ ଛାଡ଼ି ସମସ୍ତେ ମଲେ ।

ଯାହାହେଉ, ଆମେ ୫ ଜଣ ଫେରିଥିଲୁ । ଧନରତ୍ନ ସମସ୍ତଙ୍କ ମଧ୍ୟରେ ଭାଗ ବଣ୍ଟାହେଲା । ପ୍ରତ୍ୟେକଙ୍କର ଭାଗରେ ପ୍ରଚୁରଧନ ପଡ଼ିଥିଲା । ଆମ ଭିତରୁ କିଏ ଟଙ୍କା ପଇସା ଦୁଇ ଦିନରେ ଉଡ଼ାଇ ଦେଲା । କିଏ ବା ସାରା ଜୀବନ ପୁଞ୍ଜି କରି ରଖିଲା ।

ଯାହାର ଯେମନ୍ତେ ସ୍ୱଭାବ,
ଗୁରୁ କହିଲେ କିସ ହେବ ?

କାପ୍ଟାନ ସ୍ମୋଲେଟ ଜାହାଜର କାପ୍ତାନ୍ କାମ ଛାଡ଼ିଦେଲେ । ଗ୍ରେ ଧନ ସଞ୍ଚୟ କଲା, ନିଜେ ଜାହାଜର ମାଲିକହୋଇ ରହିଲା । ବିବାହକରି ପୁତ୍ର ସଂସାରୀ ହେଲା । ବେନ୍‌ଗନ୍ ଯାହା ପାଇଥିଲା, ତିନ ସପ୍ତାହରେ ସବୁ ଉଡାଇ ଦେଇ ଫକୀର ହେଲା କହିଲେ ଚଳେ ।

ସିଲ୍‌ଭର ସମ୍ବନ୍ଧରେ କୌଣସି ଖବର ମିଳିଲାନାହିଁ । ସେ କୁଆଡେ଼ ଗଲା, ତାର କଣ ହେଲା, କିଏ କହିବ ? ମୋ ଜୀବନପଥରୁ ସେ ଏକଗୋଡ଼ିଆ ବୁଢ଼ା ନାବିକ ଦୂର ହୋଇଗଲା ସତ, କିନ୍ତୁ ତାର କାପ୍ତାନ୍ ଫ୍ଲିଣ୍ଟ କଥା ମୋ ମନରୁ ପାସୋରି ଯାଉନାହିଁ । ଆଜି ମୋର କଣ ହେଲା ?

ସେ ଅଭିଶପ୍ତ ଦ୍ୱୀପକୁ ଆଉ କେବେ ଯାଇନାହିଁ; କିନ୍ତୁ ସ୍ୱପ୍ନରେ ସେ ଦୃଶ୍ୟ ବରାବର ଦେଖୁଥାଏ । ଅନେକଦିନ ପର୍ଯ୍ୟନ୍ତ ମୁଁ ରାତିଅଧରେ ସ୍ୱପ୍ନ ଦେଖେ ଯେ କୂଳରେ ଢେଉର ଆଘାତ ମୋ କାନରେ ପଡ଼େ, ମୁଁ ଚମକି ପଡ଼ି ବିଛଣାରେ ଉଠି ବସେ । ମୋ କାନରେ ସିଲ୍‌ଭରର ଶୁଆ, କାପ୍ତାନ୍ ଫ୍ଲିଣ୍ଟର କର୍କଶ ସ୍ୱର କ୍ରମାଗତ ଶୁଣାଯାଏ; ଆଠଖଣ୍ଡି—ଆଠଖଣ୍ଡି । ଫ୍ଲିଣ୍ଟ କଥା ଓ ସିଲ୍‌ଭର କଥା ମୁଁ ଆଦୌ ଭୁଲିପାରେ ନାହିଁ ।

—*—